# ପ୍ରାଚୀକୁ ପ୍ରୋମିଓପାଥ୍

ରମେଶ ପାଣିଗ୍ରାହୀ



# ହାତୀକୁ ହୋମିଓପାଥି

ଶ୍ରୀ ରମେଶପ୍ରସାଦ ପାଣିଗ୍ରାହୀ



ତାରାତାରିଣୀ ପୁସ୍ତକାଳୟ,
ବାରକସ୍, ବ୍ରହ୍ମପୁର-୧

ନାଟକର ନାମ :

ହାତୀକୁ ହୋମିଓପାଥି (୧୯୮୭)

HATI KU HOMEO PATHY (1987)

ଲେଖକ :

ରମେଶପ୍ରସାଦ ପାଣିଗ୍ରାହୀ

Ramesh Prasad Panigrahi

Dept. of English

Ravenshaw College, Cuttack—753003



ପ୍ରକାଶକ :

ଶ୍ରୀ ଭଗବାନ ପାଢ଼ୀ

ତାରତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର-୭୬୦୦୦୧

Sri Bhagaban Padhi

Tara Tarini Pustakalaya

Berhampur—760001

ପ୍ରଚ୍ଛଦପଟ ଶିଳ୍ପୀ :

ଶ୍ରୀ ଛନ୍ଦାଚରଣ ଆଚାର୍ଯ୍ୟ

S. E. R. T. ଭୁବନେଶ୍ୱର

Sri Chhanda Charan Acharya

SERT, Bhubaneswar

ମୁଦ୍ରାକର :

ମନମୋହନ ଟ୍ରେଡ଼ର୍ସ,

ବ୍ରହ୍ମପୁର-୨ (ଗଞ୍ଜାମ)

ମୂଲ୍ୟ : ଟ. ୮-୫୦

Price : Rs. 8-50

# ଉତ୍ସର୍ଗ ପତ୍ର

ନର୍ଦ୍ଧେଶକ

ଶ୍ରୀ ଦୋଲଗୋବିନ୍ଦ ରଥ (ଆକାଶ)

ଓ

ଶ୍ରୀମତୀ ନିଷ୍ଠା କରୁଆ (ବର୍ଷା)

ଙ୍କ

ହାତରେ

# ଗଞ୍ଜାମ କଳା ପରିଷଦ, ବ୍ରହ୍ମପୁର (୧୯୮୪-୮୫)

## ଏବଂ

# ସଂଗୀତ ନାଟକ ଏକାଡେମୀ ଉତ୍ସବ, ବାରିପଦା ଠାରେ ଅଭିନୟ କରିଥିବା କଳାକାରଙ୍କ ନାମ

ଜନୈକ ବୃଦ୍ଧ/ଦନେଇ ମାଷ୍ଟର : ରାମଚନ୍ଦ୍ର ଦାଶ

ରାମ/ଯୁବକ : ରାମଚନ୍ଦ୍ର ରାଓ

ବାବା/ହାତୀ/ସାହୁକାର : ଦାଶରଥୀ

କଲମ ବାଣ୍ଡିଆ : ଅଚ୍ୟୁତାନନ୍ଦ ପ୍ରହରାଜ

ବଲମ ବାଣ୍ଡିଆ : ଅର୍ଜୁନ ସ୍ୱାଇଁ

ଗବେଷକ : ବାଳକୃଷ୍ଣ ଦାଶ

ସାମ୍ବାଦିକ : ସୁବୋଧ ପଟ୍ଟନାୟକ

ହାସ୍ୟରସ ବିଶାରଦ/
ଭେଟେରନାରି ଡିରେକ୍ଟର : ଶୋଭନ ଦାସ

ହକର : ଦୀପକ ଦାଶ (ବୁଲୁ)

ଲକ୍ଷ୍ମୀ/ଲକ୍ଷ୍ମୀ : ବଂଦନା ରଥ (ଶ୍ରେଷ୍ଠ ଅଭିନେତ୍ରୀ ରୂପେ ପୁରସ୍କୃତ)

ଆଲୋକ ଓ ମଂଚ ପରିକଳ୍ପନା : ଡ. ନୃସିଂହାନନ୍ଦ ମହାପାତ୍ର, (ଏମ୍. ଏସ୍. ସି., ପି. ଏଚ୍‌ଡ଼ି.)

ମଂଚ : ବାବୁଲ

ନିର୍ଦ୍ଦେଶ ଓ ସଂଗୀତ : ଶ୍ରୀ ବାଳକୃଷ୍ଣ ଦାଶ

ସହକାରୀ ନିର୍ଦ୍ଦେଶକ : ଅଧ୍ୟାପକ ନୃସିଂହାନନ୍ଦ ମହାପାତ୍ର

# ହାତୀକୁ ହୋମିଓପାଥି

ଯେଉଁମାନେ ନିଜ ତିଆରି ଦ୍ୱୀପରେ ନିଜେ ବନ୍ଦୀ, ଯେଉଁମାନେ ରାସ୍ତା ସହିତ, ଚା-ଗଳି-ପାନଦୋକାନ ସହିତ, ଗାଁ ଛକ, କ୍ଲବ୍ ଘର ସହିତ ସମ୍ପର୍କ ତୁଟାଇ ବସିଛନ୍ତି ସେମାନଙ୍କୁ ନାଁଟା ଶୁଣିଲେ ଗଂଧେଇବ । ହସମାଡ଼ିବ । କାରଣ ଜୀବନ ସମ୍ପର୍କରେ ସେମାନଙ୍କର ଏକ ଅଜବ ଧାରଣା । ହଠାତ୍ ସେମାନେ ଗମ୍ଭୀର ହୋଇଯିବେ ନ ହେଲେ ଗୋଟାଏ ମନଗଢ଼ା ଦାର୍ଶନିକ ଉକ୍ତି ଖୋଜିବେ ଜୀବନ ଭିତରେ । ସେମାନେ ଜାଣିନାହାନ୍ତି ଯେ ରାସ୍ତାର ଧୂଳି ମାଟି ଭିତରେ, ଗାଁ ଛକର ସାଧାରଣ 'ବୋଲି' ଓ କଥା କହିବା ଶୈଳୀରେ ମଧ ଗୋଟାଏ ପ୍ରଚ୍ଛନ୍ନ ଦର୍ଶନ ଅଛି ।

'ହାତୀକୁ ହୋମିଓପାଥି' ସେମିତି ଏକ ରାସ୍ତାକଡ଼ର ଗୁଳିଖଟି ଢଗ । ଏହାର ବିଭିନ୍ନ ଅର୍ଥ ଆଇପାରେ । ହାତୀ ସବୁଠି ଅଛି । ଗୋବର ଲିପା କାନ୍ଥରେ ଝୋଟି ଦେଇ, ବୃନ୍ଦୁଅଁରେ ନାଳି ନେଳି ରଂଗ ବୋଳି ହୋଇ, ଜଗନ୍ନାଥଙ୍କର ଗଜ ଉଦ୍ଧାରଣ ବେଶରେ, ରଥଯାତ୍ରାରେ, ସର୍କସରେ, ନନ୍ଦନ କାନନରେ, ପୁରାଣରେ, ଯୁଦ୍ଧରେ, ରଜାଙ୍କ ପାଖରେ, ଧର୍ମ ମେଳାରେ, ଗାଁରେ ଫସଲ ନଷ୍ଟ କରୁଥିବା ଜନ୍ତୁ ହିସାବରେ ଏବଂ ସାଧାରଣ ଲୋକଙ୍କର ଅବଚେତନ ଭିତରେ । ସେଇ ଭଳି 'ହୋମିଓପାଥି' କାହାରି ଅବୋଧ୍ୟ ନୁହେଁ । ଜଣା ଅଧିକେ ସମସ୍ତେ ଜାଣନ୍ତି ଯେ ସେଥିରେ ଔଷଧର ବସ୍ତୁ ରୂପ ନଥାଏ । କେବଳ 'ଗୁଣ' ଟା ଗୁଣକୁ ଗୁଣ ହୋଇ ବଢ଼ି ଚାଲେ ଓ ମଂତ୍ର ଭଳି ଶରୀରରେ କାମ କରେ । କେବଳ ଶରୀରରେ ନୁହେଁ—ସମଗ୍ର ଜୈବିକ ପ୍ରକ୍ରିୟା ଭିତରେ ଏପରିକି ମାନସିକ ସ୍ତରରେ ମଧ୍ୟ ତାହା ପ୍ରଭାବ ପକାଇ କାମ କରିଚାଲେ ।

ଗାଁ ଛକରେ ଯେଉଁ ଢୋକାଠା 'ହାତୀକୁ ହୋମିଓପାଥି' କହି ଅନ୍ୟମାନଙ୍କୁ ହସାଏ ସେ ମଧ ଜାଣିନାହିଁ ଯେ ହାତୀ ଭାରତୀୟ ଜନମାନସର ଅବଚେତନ ଭିତରେ ଗୋଟିଏ ଅନୁଭୂତି ରୂପରେ ବିଦ୍ୟମାନ ଏବଂ 'ହୋମିଓପାଥି' ରେ ଔଷଧ ଏକ 'ଦ୍ରବ୍ୟ' ନ ହୋଇ କେବଳ 'ଗୁଣ' ହୋଇ ରହିଥାଏ ।

‘ହାଷ୍ଟକୁ ହୋମିଓପାଥି’ କହିଲାବେଳେ ମୁଁ ସେପରି ଏକ ଅମୂର୍ତ୍ତ ଅନୁଭୂତି କଥା ହିଁ ଚିନ୍ତା କରିଛି । ହାଷ୍ଟ ଏଇ ନାଟକର ସମଗ୍ର ଅନୁଭୂତି ଭିତରେ ଗୋଟାଏ ଅନ୍ତର୍ହିନ ଶ୍ଳେଷ (irony) ।

ଆଗରୁ ସମସ୍ତଙ୍କର ଧର୍ମ ଓ ଧାରଣାର ଗୋଟାଏ ନିର୍ଦ୍ଦିଷ୍ଟ ମାନଦଣ୍ଡ ଥିଲା । ରାମଚଂଦ୍ର ବଣକୁ ଗଲାବେଳେ ସମସ୍ତେ କାନ୍ଦି ପାରୁଥିଲେ । ଶ୍ରୀକୃଷ୍ଣ ଓ ରାଧାଙ୍କ ସାହିତ୍ୟ ପାଠକ ମନରେ ଏକାପ୍ରକାର ଆବେଗ ସୃଷ୍ଟି କରି ପାରୁଥିଲା । ଗୋଟାଏ ମୂଲ୍ୟବୋଧରେ ସବୁ ଦର୍ଶକ/ପାଠକ ବିଶ୍ୱାସ ରଖୁଥିଲେ । ଏଇ କୋଡ଼ିଏ ବର୍ଷ ହେଲା ଆଜି ସେଇ ସମତା ନାହିଁ । ଯିଏ ଯାହା ବାଟରେ ବୁଝୁଛି । ଶତାବ୍ଦୀର ଶେଷ ଅଙ୍କରେ ଅର୍ଜୁନ ଶ୍ରୀକୃଷ୍ଣଙ୍କ ଠାରୁ କିଛି ଶିକ୍ଷା ନ କଲା ଭଳି ଜଣାପଡ଼ୁଛି । ମୋଟାମୋଟି ଆମର ଚେର କଟିଯାଇଛି ତଳୁ । ନିର୍ମୂଳି ଲତାପରି ବାୟୁବାୟୁ ଚେର ବିସ୍ତାର କରି ଆମେ ମନ ଇଚ୍ଛା ଲଟେଇ ଚାଲିଛୁ । ଏଣୁ ହାଷ୍ଟ ଓ ହୋମିଓପାଥିକୁ ଆମେ ଏକ ଅବାନ୍ତର ଓ ଉଦ୍ଭଟ ଶାବ୍ଦିକ ସଂଯୋଗ ବୋଲି ମନେକରି ହସି ଦେଇପାରୁ । ସେଥିରେ ମଧ୍ୟ ଶ୍ଳେଷାନୁଭୂତି ଅଛି । ନିର୍ଦ୍ଦିଷ୍ଟ ନୈତିକ ମାନଦଣ୍ଡ ନଥିବା ସମାଜରେ ମଣିଷର କରୁଣତମ ବ୍ୟଥାଟି ଅନ୍ୟମଣିଷ ପାଇଁ କରୁଣ ନ ହୋଇ ହାସ୍ୟକର ହୋଇ ପାରେ । ଓଡ଼ିଶାରେ ଅନ୍ୟର ଗୋଡ଼ ଟାଣି ଗୋଡ଼ଭାଂଗି ଦିଆଯାଏ ଆନଂଦ ଅନୁଭବ କରାଯାଇ ପାରେ । ଏଣୁ ଏ ମାଟିରେ ଯେଉଁମାନେ ନିଜକୁ ବୁଦ୍ଧିଜୀବୀ ବୋଲି ଭାବନ୍ତି ସେମାନଙ୍କୁ ନାଟକର ଦର୍ଶକ ବୋଲି ଗ୍ରହଣ କରାଗଲେ ‘ଟ୍ରେଜେଡ଼ି’ ଲେଖାଯାଇ ପାରିବ ନାହିଁ । କାରଣ କାହାର କୌଣସି ବିପର୍ଯ୍ୟୟ ଅନ୍ୟ କାହାର ହୃଦୟକୁ ଛୁଇଁ ପାରୁନାହିଁ । ଏହାର ମୁଖ୍ୟ କାରଣ ହେଲା ବିଶ୍ୱାସର ନିର୍ଦ୍ଦିଷ୍ଟ ମାନଦଣ୍ଡ ନାହିଁ । ଏପରି ଏକ ଅବସ୍ଥାରେ ସହସ୍ର ଦର୍ଶକମାନଙ୍କପାଇଁ ନାଟକ ଲେଖିଲା ବେଳେ କେବଳ ଶ୍ଳେଷାତ୍ମକ ଅନୁଭୂତି ପରିବେଷଣ କରିବା ସମ୍ଭବ ।

ଓଡ଼ିଶାର ଜନ ସାଧାରଣଙ୍କ ପଛରେ କୌଣସି ଗୌରବମୟ ଇତିହାସ ମଧ୍ୟ ନାହିଁ । ଯାହା ଅଛି ତାହା କିଂବଦନ୍ତୀ ଏବଂ ସେଥିରେ ଅଧିକାଂଶ ଲୋକଙ୍କର ବିଶ୍ୱାସ ନାହିଁ । ଏଠାରେ ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ବିବର୍ତ୍ତନ ଘଟିବା ପୂର୍ବରୁ ଆମ ଜନସାଧାରଣଙ୍କୁ ନୂତନ ବସ୍ତୁବାଦର

ବିଷୟ ଗ୍ରାସ କରି ଯାଉଛନ୍ତି । ଏଣୁ ଆମ ମାଟିରେ ଗଢ଼ି ଉଠୁଥିବା କାହାଣୀ ବୋଲି କିଛି ନାହିଁ । କାହାଣୀ ଥିଲେ ତା'ର ଆରମ୍ଭ, ମଧ୍ୟଭାଗ ଓ ଶେଷ ଥାଆନ୍ତା । ଉଦ୍‌ବର୍ତ୍ତନ ଥିଲେ ସମୟର ଧାରଟିଏ ମିଳନ୍ତା । ତାହା ମଧ୍ୟ ନାହିଁ । ଏଣୁ ଏଇ ଲୋକମାନଙ୍କ ପାଇଁ ଲେଖିଲାବେଳେ ନିର୍ଦ୍ଦିଷ୍ଟ କାହାଣୀଟିଏ ଲେଖିବା ଅବାନ୍ତର ମନେହୁଏ । ନିର୍ଦ୍ଦିଷ୍ଟ କାହାଣୀ ଲେଖିଲେ ତାହାର ଘଟଣା-ଗୁଡ଼ିକୁ ସମୟକ୍ରମରେ ସଜେଇ ହୁଅନ୍ତା । କିନ୍ତୁ ଏକ ବୃହତ୍ତର ସମୟକ୍ରମରେ ଲୋକଙ୍କର ବିଶ୍ୱାସ ନାହିଁ । ନା ପ୍ରାରବ୍ଧରେ ବିଶ୍ୱାସ ଅଛି ନା ପରିଣତିରେ । ସବୁ ମାନଦଣ୍ଡ ପ୍ରତି ସନ୍ଦେହ ।

ସେଇଥିପାଇଁ ପ୍ରତିଥର ରାମଚଂନ୍ଦ୍ରଙ୍କ କାହାଣୀ କହିଲା ବେଳେ ରାମଚଂନ୍ଦ୍ର ବଦଳି ଯାଆନ୍ତି । ପ୍ରତିଥର ହାଣ୍ଡିଟାକୁ ଗୋଟିଏ ନିର୍ଦ୍ଦିଷ୍ଟ ଚରିତ୍ରର ସୀମାଙ୍କିତରେ ଆବଦ୍ଧ କରି ରଖୁ ରଖୁ ସିଏ ବି ବଦଳି ଯାଏ । କାହାଣୀଟା ସେଇ ଭଳି ଆରମ୍ଭ କୋଉଠି ଜଣା ପଡ଼ିଲା ନାହିଁ । ଶେଷ ମଧ୍ୟ । ନା ରୈଖିକ ପ୍ରଗତି ସମ୍ଭବ ହେଲା ନା ବୃତ୍ତାକାର ସମୟର ଚିତ୍ର ଆଁକିହେଲା । ଯାହା ମଂଚ ଉପରେ ଘଟିଲା ତାହା କୌଣସି ବାସ୍ତବତାର ଅନୁକୃତି ମଧ୍ୟ ହୋଇ ପାରିଲା ନାହିଁ । ବୋଧହୁଏ 'ହାଣ୍ଡିକୁ ହୋମିଓପାଥି' ଏକ "ନିତ୍ୟପ୍ରବୃତ୍ତ ବର୍ତ୍ତମାନ"ର ନାଟକ ।

କେଉଁଠି ଘଟିଲା ଯା'ର ଘଟଣା ? ଏହାର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ଅଛି କି ? ଯେଉଁ ସ୍ଥାନଗୁଡ଼ିକ ଘଟଣାଚକ୍ରକୁ ସୂଚିତ କରିବା ପାଇଁ ଅବତାରଣା କରାଗଲା ସେଗୁଡ଼ିକ କ'ଣ ପ୍ରକୃତ ସ୍ଥାନ ? କେଉଁ ନିର୍ଦ୍ଦିଷ୍ଟ ସ୍ଥାନର ଅନୁକୃତି ? ବୋଧହୁଏ ନୁହେଁ ।

ନିର୍ଦ୍ଦିଷ୍ଟ ସ୍ଥାନ, କାଳ ଓ ପାତ୍ରର ଅଭାବରେ ଏହି ନାଟକଟି ତା'ର ବାସ୍ତବ ପୃଷ୍ଠଭୂମିରୁ ବିଚ୍ଛିନ୍ନ ହୋଇ ପଡ଼ୁଛି । ଏହା ବ୍ୟତୀତ ଏ ନାଟକର କେତୋଟି ଚରିତ୍ର, ଚରିତ୍ରପଦବାଚ୍ୟ ମଧ୍ୟ ନୁହନ୍ତି । ସେହି ଚରିତ୍ରମାନେ କୌଣସି ନିର୍ଦ୍ଦିଷ୍ଟ ମନସ୍ତାତ୍ତ୍ୱିକ ଆବେଗର ବଶବର୍ତ୍ତୀ ନୁହଁନ୍ତି । ତେଣୁ ସେମାନେ କୌଣସି ନିର୍ଦ୍ଦିଷ୍ଟ ମାନସିକ ବା ନ୍ୟାୟିକ କାରଣ ଯୋଗୁଁ କାର୍ଯ୍ୟ କରୁନାହାନ୍ତି । ଏପରିକି ଚରିତ୍ର ହିସାବରେ ସେମାନେ ନୈତିକ ସ୍ତରରେ

ମଧ୍ୟ ନିର୍ଦ୍ଦିଷ୍ଟ ପରିଣତି ବା ଉପସଂହାରରେ ପହଂଚି ପାରୁନାହାନ୍ତି । ଏଣୁ ନାଟକ ଦେଖିଲାବେଳେ କୌଣସି ଦର୍ଶକ ଚରିତ୍ରମାନଂକ ସାଙ୍ଗରେ ନିଜକୁ ସାମିଲ କରିବା ସମ୍ଭବ ନୁହେଁ ।

କିନ୍ତୁ ନାଟକ ଗ୍ରାମାଞ୍ଚଳ ଲୋକମାନଙ୍କ ପାଇଁ ମୁଁ ଲେଖିଥାଏ । ସେମାନଙ୍କ ପାଇଁ ହସିବା ଓ କାଂଦିବା ଆବଶ୍ୟକ ହୋଇ ପଡ଼ିଥାଏ । ନିଜେ ନାୟକ ବା ନାୟିକା ସାଙ୍ଗରେ ହସି କାଂଦି ସାଧାରଣ ଦର୍ଶକଟିଏ ନାୟକ-ନାୟିକାର ଚରିତ୍ର ସହିତ ଏକାକାର ହୋଇଯାଇ ପାରିଲେ ତା'ର ନିଜର ନୈତିକ ଉତ୍ତରଣ ଘଟିପାରେ । କିନ୍ତୁ ସହରର ଶିକ୍ଷିତ ଦର୍ଶକମାନଙ୍କ ପାଇଁ ନାଟକ କେବଳ ହସକାଂଦର ମାଧ୍ୟମ ନ ହୋଇ ଆଜି କିଛି ଅଧିକା ତଥା, ବିଶ୍ଳେଷଣ ବା ଆତ୍ମ ଉନ୍ମେଷ ର ଆଧାର ହେବା ବାଞ୍ଛନୀୟ । ଏହାଦ୍ୱାରା ନାଟକ ଏକ ବୃହତ୍ତର ନୈତିକ ଦାୟିତ୍ୱ ବହନ କରିବା ପାଇଁ ସକ୍ଷମ ହୋଇପାରିବ ।

ଓଡ଼ିଶାର ସହରାଞ୍ଚଳମାନଙ୍କ ମଧ୍ୟରୁ ରାଜଧାନୀକୁ ଅଲଗା କରି ଦିଆଯାଇ ପାରେ । ଜାଣି ଶୁଣି ଏମାନଙ୍କୁ ମୁଁ ନାଟ୍ୟ ରସ ଆସ୍ୱାଦନ କରିବାକୁ ଦେଇନାହିଁ । ନାଟ୍ୟ ଚରିତ୍ରମାନଂକ ସହ ସାମିଲ ହେବାକୁ ଦେଇ ନାହିଁ । କାରଣ ସେମାନେ କୌଣସି ବ୍ୟକ୍ତି କୁ ନାୟକ ବା ନାୟିକା ଭାବରେ ଗ୍ରହଣ କରିବାକୁ ନାରାଜ । ତେଣୁ ବିଚ୍ଛିନ୍ନ ହୋଇଗଲେ ବରଂ ସେମାନେ ନାଟକର ପ୍ରତ୍ୟେକ ସଂଳାପକୁ ଶୁଣିବେ ଓ ବୁଝିବା ପାଇଁ ଚେଷ୍ଟା କରିବେ । ଗୋଟିଏ ପର୍ଯ୍ୟାୟରେ ଓଡ଼ିଆ ଦର୍ଶକମାନଂକ ସହିତ ନାଟକକୁ ସଂଯୁକ୍ତ କରି ଦିଆଯାଇଥିଲା । ଶ୍ରୀ କାର୍ତ୍ତିକଚନ୍ଦ୍ର ଘୋଷ ଓ ଶ୍ରୀ କୁଂଜବିହାରୀ ନନ୍ଦଙ୍କ ଠାରୁ ଆରମ୍ଭ କରି ଶ୍ରୀ ମନୋରଂଜନ ଦାସ ଙ୍କ ('କାଠଘୋଡ଼ା' ଓ 'ଅମୃତସ୍ୟପୁତ୍ର') ପର୍ଯ୍ୟନ୍ତ । ଶ୍ରୀ ଦାସଙ୍କ ନାଟକରେ ସୂତ୍ରଧରଟିଏ ଆସି ଦର୍ଶକମାନଙ୍କ ସହିତ ସିଧା ସଳଖ କଥାବାର୍ତ୍ତା କରୁଛି । ସୂତ୍ରଧରଟି ନାଟକଠାରୁ ଅଲଗା ରହିବା ଯୋଗୁଁ ସେଠାରେ 'ବ୍ରେଖ୍ଟୀୟ ଆଲିଏନେସନ' ସମ୍ଭବପର ହୋଇପାରୁ ନାହିଁ । ଅପର ପକ୍ଷେ 'ଅମୃତସ୍ୟ ପୁତ୍ର' ଓ 'କାଠଘୋଡ଼ା' ର ଚରିତ୍ରମାନେ ଏତେ ସାଂଘାତିକ ମାନସିକ ସ୍ଥିତିର ପରିବାହକ ଯେ, ସେଇ ଆତ୍ମସଂଘାତ ଭିତରୁ ବାହାରିଆସି ଦର୍ଶକମାନଂକ ଆଗରେ ଟିକିଏ ହାଲୁକା ହୋଇ କଥାବାର୍ତ୍ତା କରିବାକୁ ସକ୍ଷମ ହୋଇ ପାରନ୍ତି ନାହିଁ ।

'ହାଖକୁ ହୋମିଓପାଥି' ମନସ୍ତାତ୍ତ୍ୱିକ ପରଂପରାର (Psychologism) ନାଟକ ନୁହେଁ, ଏହାର ପ୍ରତ୍ୟେକ ଘଟଣା ପଛରେ 'ମୋଟିଭେସନ୍' ଖୋଜାଯାଇ କରାଯାଇ ନାହିଁ । ସାମାଜିକ ସମସ୍ୟାମୂଳକ ନାଟକରେ ଯେପରି ଶେଷ ଦୃଶ୍ୟ ଆଡ଼କୁ ଦର୍ଶକମାନେ ସମସ୍ୟାଗୁଡ଼ିକର କିପରି ସମାଧାନ କରାଗଲା/ନଗଲା ଭାବନ୍ତି, ମନସ୍ତାତ୍ତ୍ୱିକ ନାଟକର ମଧ୍ୟ ସେଇଭଳି ପରିଣତି ସଂପର୍କରେ ଚିନ୍ତା କରାଯାଇ ନାଟ୍ୟକାରଙ୍କର ଦୌଡ଼ କେତେଦୂର ମପାଯାଇ ଥାଏ । ମୋର ଧାରଣା ଏହାଦ୍ୱାରା ନାଟକର ନାଟକୀୟ (Theatricality) ନଷ୍ଟ ହୋଇଯାଏ ।

ମଂଚଟି ଅଭୂତପୂର୍ବ, ଅଦ୍ଭୁତ, ରହସ୍ୟମୟ, ଯାଦୁକରୀ ଘଟଣା ସମାହାରର ସ୍ଥାନ, ସେଇଠି ଯେକୌଣସି ଜନିଷ ସମ୍ଭବ, ଶିହାରସେଲ କରୁ କରୁ 'ବଟମ୍'ର ମୁହଁଟା ହଠାତ୍ ଗଧ ମୁହଁ ହେଇଯାଇ ପାରେ (A Mid Summer Night's Dream) । ହଠାତ୍ ନାଁ,ଗାଁ, ପରିଚୟ ନଥାଇ ଯେକୌଣସି ଲୋକ ଆସି ତମକୁ ଧମକେଇ ଦେଇପାରେ (Harold Pinter ଙ୍କ ଯେକୌଣସି ନାଟକ) ଜୀବନ ପ୍ରତି ଯେଉଁ ଧମକ ଆସେ ତା'ର ହିଗ ନିର୍ଣ୍ଣୟ କରିହୁଏ ନାହିଁ । ତେଣୁ ମଂଚରେ ଯେତେବେଳେ ଯାହା ଇଚ୍ଛା କରାଯାଇ ପାରେ । ସାମାଜିକ ଓ ମନସ୍ତାତ୍ତ୍ୱିକ ସମସ୍ୟାର ଊର୍ଦ୍ଧ୍ୱରେ ମଂଚଟିଏ ଅଛି, ସେଠାରେ ଘଟଣାର ଅନୁକୃତି ଦେଖାନଯାଇ କେବଳ 'ରିଚୁଆଲ୍'ଗୁଡ଼ିକୁ ଦେଖାଯାଇ ପାରେ । 'ରିଚୁଆଲ୍' କହିଲେ ଦୈନନ୍ଦିନ ଜୀବନର କାର୍ଯ୍ୟକଳାପକୁ ମଧ୍ୟ ବୁଝାଯାଇ ପାରିବ । ନାଟକୀୟ 'ରିଚୁଆଲ୍ ମାଧ୍ୟମରେ ଗୋଟିଏ ସାଂସ୍କୃତିକ ଅବଚେତନର ନକ୍ସା ଆଂକିହେବ । T.S. Eliot ଙ୍କ ଭଳି ପୁରୁଣାକାଳିଆ ଲୋକ ମଧ୍ୟ ସାମାଜିକ ଓ ମନସ୍ତାତ୍ତ୍ୱିକ ବାସ୍ତବତା ଯଥେଷ୍ଟ ନୁହେଁ ବୋଲି ଯୁକ୍ତି ବାଢ଼ିଥିଲେ :

"The realism of the ordinary stage is something to which we can no longer respond, because to us it is no longer realistic. We know now that the gesture of daily existence is inadequate for the stage ; instead of pretending that the stage gesture is a copy of reality,

let us adopt a literary untruth, a thorough-going convention, a ritual. "

'ହାତୀକୁ ହୋମିଓପାଥି' ନାଟକରେ ଏହି 'thorough-going convention'ମାଧ୍ୟମରେ ହିଁ ବାସ୍ତବଧର୍ମିତାକୁ ଭାଙ୍ଗି ଏକ ନୂତନ ଶ୍ଳେଷାତ୍ମକ ସାମଗ୍ରୀକ ଜୀବନାନୁଭୂତିର ପରୀକ୍ଷା କରାଯାଇଅଛି । ଅତଏବ ଏହା ଏକ ନିଛକ ବାସ୍ତବ ଘଟଣା ଉପରେ ଆଧାରିତ ହୋଇଥିଲେ ସୁଦ୍ଧା ଏହା ବାସ୍ତବତାର (ବାସ୍ତବୋତ୍ତର) ଚଉହଦୀ ଡେଇଁ ଏକ ବାସ୍ତବୋତ୍ତର ସ୍ତରକୁ ଚାଲିଯାଇଛି ।

'ହାତୀକୁ ହୋମିଓପାଥି' ନାଟକର ମୂଳବୀଜ ଏକ ସତ୍ୟ ସମ୍ବାଦ । ୧୯୮୨ ମସିହା ଅଗଷ୍ଟ ମାସରେ ଓଡ଼ିଶାର ସବୁ ସଂବାଦପତ୍ରରେ ପ୍ରକାଶ ପାଇଥିଲା । ବନ୍ୟାରେ ଚନ୍ଦକା ଜଂଗଲରୁ ଗୋଟାଏ ହାତୀ ନଗରରେ ଭାସି ଆସିଥିଲା । 'ପ୍ରଜାତନ୍ତ୍ର' ରେ ସଂବାଦ ବାହାରିଲା "ବଣୁଆ ହାତୀ ସାଇକେଲ ଚଢ଼ାଳୀକୁ ହତ୍ୟା କରିଛି । " ଏହି ପ୍ରସଙ୍ଗରେ 'ହତ୍ୟା" ଶବ୍ଦଟି ବେଶ୍ ନାଟକୀୟ ମନେ ହେଲା । 'ସମାଜ' ରେ ଏଇ ଭାସି ଆସିଥିବା ବଣୁଆହାତୀ ସଂପର୍କରେ ଦୁଇଗୁରିଦିନ ପର୍ଯ୍ୟନ୍ତ ସଂବାଦ ପ୍ରକାଶ ପାଇବାକୁ ଲାଗିଲା । ହାତୀଟିକୁ ଶେଷରେ ଗୁଳିକରି ମାରିଦିଆ ଗଲା । କିଂନ୍ତୁ କେଉଁ ବାଣୁଆ ମାରିଲା ତାହା ଜଣାଗଲା ନାହିଁ । ଦୁଇଜଣ ବାଣୁଆ ହାତୀଟିକୁ ଗୁଳି କରିଥିବା କଥା ନେଇ ତର୍କ ଚାଲିଲା । ଶେଷରେ ଦିନେ 'ସମାଜ' ର ପ୍ରଥମ ପୃଷ୍ଠାରେ ଗୋଟିଏ ଫଟୋ ପ୍ରକାଶ ପାଇଲା । ଫଟୋଟିରେ ମୃତ ହାତୀ, କଟକର ତତ୍କାଳୀନ କଲେକ୍ଟର ଓ ଦୁଇଜଣ ବଣୁଆ ଠିଆ ହୋଇଥିଲେ ।

ଘଟଣାଟି ସତ୍ୟ ହେଲେବି ମତେ ଲାଗିଲା ସତେ ଯେମିତି ଏଇଟା ଗୋଟାଏ ଗପ । ବାସ୍ତବ ହେଲେବି ମତେ ଲାଗିଲା ସତେ ଯେମିତି ସ୍ୱାଠୁ ବଳି ଉଦ୍ଭଟ ଘଟଣା ଆଉ କେବେ ଘଟିନାହିଁ । ପୁଣି ଲାଗିଲା ହାତୀଟା ଭାସି ଆସିବା, ଜଣେ ସାଇକେଲ ଚଢ଼ାଳୀକୁ ହତ୍ୟା କରିବା, ହାତୀଟାକୁ ମାରିବା ପାଇଁ ଦୁଇଜଣ ବାଣୁଆଙ୍କ ଦାବୀ ଓ ଶେଷରେ ରାଜ୍ୟ ପ୍ରଶାସନ ବିଭାଗ ଓ ସମ୍ବାଦପତ୍ରମାନଙ୍କର ବିବରଣୀ ମଧ୍ୟରେ ଗୋଟିଏ ନାଟକୀୟତା ଅଛି ।

ଷଷ୍ଠ ଦଶକ ପରବର୍ତ୍ତୀ ସମୟର ସମାଜରେ ଯାହା ଘଟୁଛି ତାହା ଏକ ବନ୍ୟାସହ ସମାନ । ଏଇ ବନ୍ୟାରେ କିଏ ଯେ କେତେବେଳେ ଭାସି ଯାଉଛି ତା'ର ଇୟତ୍ତା ନାହିଁ । ଏପରିକି ହାତୀଭଳି ବିଶାଳ ଜୀବ ମଧ୍ୟ କିନ୍ତୁ

ହାତୀଟାକୁ ମାରଦେଲ୍ ବୋଲି ଯେଉଁ ଅହଂ ଟି ପ୍ରକାଶ ପାଉଛି ତାହା ହୁଏତ ଆତ୍ମାର ବିପର୍ଯ୍ୟୟ ଘଟାଇ ପାରେ । କିଏ କାହାକୁ ମାରିବ ? ସମସ୍ତଙ୍କ ଉପରେ ବହିଯାଉଛି ଏକ ଦୁର୍ନିବାର ବନ୍ୟାର ସ୍ରୋତ । ହାତୀଟା ବା କିଏ ? ଏକ ଅଦୃଶ୍ୟ ବ୍ୟକ୍ତି ? ଭାଗ୍ୟ ? ଅପଦେବତା ? ସମାଜ ? ସାମାଜିକ ଅରଣ୍ୟର ଚତୁଷ୍ପଦ ? ବ୍ୟକ୍ତି ଭିତରେ ଲୁଚିରହିଥିବା ଅସୁର ? ବନ୍ୟାରେ ଭାସିଆସିଥିବା ସେଇ ଭୟଙ୍କର ବଣୁଆ ହାତୀଟା ଯଦି ନମରି ଆମ ସମାଜ ଭିତରକୁ ଧସେଇ ପଶିଯାଏ ? ଯଦି ମଣିଷର ଆତ୍ମାଭିତରକୁ ଗୋଟାଏ ଭାଇରସ୍ ଭଳି ପଶି ରୋଗଗ୍ରସ୍ତ କରିଦିଏ ? ଉଦାହରଣ ସ୍ୱରୂପ, ହାତୀଟା ଲମ୍ପଟ ହାତୀବାବା ହୋଇପାରେ ନ ହେଲେ ଗାଁ ଭିତରେ ଥିବା ହାତୀ ସାହୁକାର ହୋଇ ଲକ୍ଷ୍ମୀକୁ ଧର୍ଷଣ କରିପାରେ । ହାତୀଟା କ'ଣ ମଣିଷକୁ ପ୍ରତିମୁହୂର୍ତ୍ତରେ ରୋଗଗ୍ରସ୍ତ କରୁଥିବା ସେଇ ରୋଗ ?

ଷାଠିଏ ମସିହା ପରଠାରୁ ସମାଜର ପ୍ରତ୍ୟେକସ୍ତରରେ ଗୋଟାଏ ପରିବର୍ତ୍ତନ ଚାଲିଛି । ସେଇ ପରିବର୍ତ୍ତନ ଭିତରେ ସବୁ ସୂକ୍ଷ୍ମ ଅନୁଭୂତି ତଳତଳାନ୍ତ ହୋଇଯାଉଛି । ନୂଆ ନୂଆ ରାଜନୈତିକ ତତ୍ତ୍ୱ, ଅର୍ଥନୈତିକ ତତ୍ତ୍ୱ ଏବଂ ସାଂସ୍କୃତିକ—ଦାର୍ଶନିକ ଶୈଳୀ ମଣିଷକୁ ଭସେଇ ନେଉଛି । ରୋଗ ଭଳି ଆକ୍ରାନ୍ତ କରୁଛି । ଧର୍ମପାଇଁ ଦଂଗା, ଜାତି ଜାତି ଭିତରେ ହିଂସା, ରାଜନୈତିକ ନେତୃତ୍ୱ ପାଇଁ କୁସ୍ତି, ପାର୍ଥିବ ସୁଖ ପାଇଁ ଘୋଡ଼ାଦୌଡ଼—ସବୁରି ପଛରେ ଏମିତି ଗୋଟାଏ ହାତୀ । ନ ହେଲେ ଏସବୁ ପଛରେ ଗୋଡ଼ାଇ ମଣିଷର ଆତ୍ମିକ ଅବକ୍ଷୟ ଘଟି ନଥାନ୍ତା । ମୁଁ ଯେତେବେଳେ ଦେଖୁଛି ଅନ୍ୟମାନଙ୍କୁ ଏ ସଂପର୍କରେ ସଚେତନ କଲେ ମଧ୍ୟ ସେମାନେ ମତେ ଶୁଣିବାକୁ ନାରାଜ । ମୁଁ ଯେତେବେଳେ ଦେଖୁଛି ଯେ ସମସ୍ତ ପ୍ରତିରୋଧ ସତ୍ତ୍ୱେ ସବୁଠି ଏଇ ପାଗଳାମି ଦ୍ରୁତଗତିରେ ବ୍ୟାପିବାରେ ଲାଗିଛି—ସେତେବେଳେ ମନେ ହେଉଛି ମଣିଷ ବୋଧହୁଏ କ୍ରମଶଃ ନିଜ ଅଜାଣତରେ ହାତୀ ହୋଇଯାଉଛି ।

ପ୍ରଥମେ ହାତୀ ଏକ ଉପଦ୍ରବ ହୋଇ ସମସ୍ତଙ୍କ ଆଗରେ ଠିଆ ହୋଇଛି । ରାଜଧାନୀ ସାରା ସମସ୍ତେ ଆତଙ୍କିତ ହେଲେ । ହାତୀ ତା'ର ଧ୍ୱଂସଲୀଳା ଘଟାଇ ଚାଲିଲା । ଏଣିକି ଲୋକେ ଆଉ ଆତଙ୍କିତ ହେଲେ ନାହିଁ । କ୍ରମଶଃ ସେମାନେ ହାତୀ ସହିତ ନିଜକୁ ଖାପଖୁଆଇ ବଂଚିବା ଶିଖିଲେ । ସେମାନେ ବୁଝିଲେ 'ହାତୀ' ଗୋଟାଏ ନୂଆ ଫେଶନ । ହାତୀ ନାମକ ନୂଆ

ଅସୁର ପାଖରେ ନିଜକୁ ବଳି ଦେଇଦେଲେ ଆଉ ମାନସିକ ସମସ୍ୟା ଉଦ୍ଭବ ନାହିଁ । ଆଉ କେତେଜଣ ଦଟନଇ ମାଷ୍ଟ୍ରଙ୍କ ଭଳି ପାଗଳ ହୋଇଗଲେ । ଆଉ ଦଳେ ଲୋକ ନିଜ ଭିତରେ ଥିବା ସମସ୍ତ କୋମଳ ଅନୁଭୂତିଙ୍କୁ ପାହୁଣ୍ଡ ତଳେ ଦଳି ଦେଇ ନିଜେ ହାଣ୍ଡି ହେବାକୁ ଚେଷ୍ଟା କଲେ । ଭାବିଲେ ହାଣ୍ଡି ହୋଇଗଲେ ଧ୍ୱଂସ କରିବା ପାଇଁ ଏକ ଶକ୍ତି ମିଳୁଅଛି । ତା'ପରେ ଗବେଷକ-ମାନେ ବାହାରିଲେ । ଭାବିଲେ ହାଣ୍ଡିର ସ୍ୱଭାବଟା ବୁଝିଗଲେ ବୋଧହୁଏ ଆଉ ସମସ୍ୟା ଉଦ୍ଭବ ନାହିଁ । ତେଣୁ 'ହାଣ୍ଡି' ତତ୍ତ୍ୱଟାକୁ ବୁଝିଗଲେ କାଳେ ଦିବ୍ୟ ଜ୍ଞାନ ମିଳିଯିବ ବୋଲି ଭାବି ଆଉଦଳେ ହାଣ୍ଡି ସମ୍ପର୍କରେ ଗବେଷଣା କଲେ । ଶେଷରେ ଯେଉଁମାନେ ଏଇ ସବୁ ପ୍ରଚେଷ୍ଟାକୁ ଅଂଧକାରି ବୋଲି ଭାବିଲେ ସେମାନେ ହାଣ୍ଡିରୋଗକୁ ନିବାରଣ କରିବା ପାଇଁ ହୋମିଓପାଥିର ଆଶ୍ରୟ ନେଲେ ।

କିନ୍ତୁ ଏସବୁ ଭିତରେ ଯାହା ରହିଗଲା ତାହା ଏକ ପ୍ରକାଣ୍ଡ ବିରୋଧାଭାସ । ହାଣ୍ଡିରେ ରୂପାନ୍ତରିତ ହେବା ଲୋକେ ଯେଉଁ ଭଳି ପ୍ରବୃତ୍ତିର ବଶବର୍ତ୍ତୀ ହାଣ୍ଡି ରୋଗକୁ ପ୍ରତିରୋଧ କରୁଥିବା ଲୋକେ ମଧ୍ୟ ସେଇ ପ୍ରବୃତ୍ତିର ଦାସ । ଯେଉଁମାନେ 'ହୋମିଓପାଥି'ର ନିଦାନ କଲେ ସେମାନେ ବୋଧହୁଏ ଅତିମାନସ ସ୍ତରରେ ଚିନ୍ତା କରୁଥିଲେ । ଅନ୍ୟମାନେ ଏକାପ୍ରକାର ଉଦ୍ଭଟ ସ୍ଥିତିର ଶିକାର । ହାଣ୍ଡି ବିରୁଦ୍ଧରେ ବିପ୍ଳବ କରିବା (ବାମପନ୍ଥୀ ହେଉ ବା ଦକ୍ଷିଣ ପନ୍ଥୀ) ଯେପରି ଉଦ୍ଭଟ ସେଇ ଭଳି ହାଣ୍ଡିକୁ ଗ୍ରହଣ କରିନେବା ମଧ୍ୟ ଏକ ଉଦ୍ଭଟ ସ୍ଥିତି । ଯେଉଁମାନେ 'ହୋମିଓପାଥି' କଥା ଚିନ୍ତା କଲେ ସେମାନେ ନିଜେ ହାଣ୍ଡିର ସାମ୍ନା କଲେ ନାହିଁ । ଗୋଟାଏ ନିଷ୍ପାପ ଅଭିମନ୍ୟୁକୁ ବାଛି ପଠେଇ ଦେଲେ ଚକ୍ରବ୍ୟୂହ ଭିତରକୁ, ସିଏ ଦଳି ହୋଇଗଲା ହାଣ୍ଡିର ପାହୁଣ୍ଡ ତଳେ । ତା' ରକ୍ତରେ ରାସ୍ତା ଲାଲ୍ ହେଲା, ନଦୀର ଜଳ ଲାଲ୍ ହେଲା, ଆକାଶରେ ସୂର୍ଯ୍ୟାସ୍ତ ହେଲା; କିନ୍ତୁ ହାଣ୍ଡି ରୋଗ ଭଲ ହେଲା ନାହିଁ । ପ୍ରଥମେ ଗୋଟାଏ ଜାଙ୍ଗଳିକ ଉପୁ ହୋଇ ଆସିଥିବା ହାଣ୍ଡିଟା ରୋଗ ହୋଇଗଲା ଏବଂ ଶେଷରେ ଜୀବନର ଚରମ ଶ୍ଳେଷ ହୋଇ ଲକ୍ଷ୍ମୀର ପୁଅକୁ ଖାଇଗଲା । ଅଥଚ ହାଣ୍ଡିର ଗପ ଶେଷ ହେଲା ନାହିଁ ।

କିମ୍ବା 'ହାଣ୍ଡିକୁ ହୋମିଓପାଥି' ଭିତରେ ପ୍ରଚ୍ଛନ୍ନ ଭାବରେ ରହିଥିବା ପ୍ରବଳ ଅବଚେତନରୁ ଯେଉଁ ବନ୍ୟାର ସ୍ରୋତ ବହୁଛି ତା'ର ଦିଗ

ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । କାରଣ ସେଇଟା ମୋ' ନିଜ ଅବଚେତନର ସ୍ରୋତ । ନିଜକୁ ନିଜେ ବୁଝିବାର ଚେଷ୍ଟା, ନିଜ ସୃଷ୍ଟି ପ୍ରକ୍ରିୟାକୁ ନିଜେ ଦେଖିବାର ଚେଷ୍ଟା ଗୋଟିଏ ଦିଗରୁ ବିଭକ୍ତ ବ୍ୟକ୍ତିସତ୍ତାକୁ ବୁଝାଇଲା ବେଳେ ଭାରତୀୟମାନେ ତାକୁ ଆତ୍ମନିରୀକ୍ଷଣ ବୋଲି କହିଛନ୍ତି । ଆତ୍ମନିରୀକ୍ଷା କରିବା ପୂର୍ବରୁ ପାଞ୍ଚବର୍ଷ ପୂର୍ବେ ଲେଖା ହୋଇଥିବା ଏଇ ନାଟକର ପୃଷ୍ଠଭୂମି ଓ ବିବର୍ତ୍ତନ ସଂପର୍କରେ ମୁଁ ଭାବୁଛି ।

ପ୍ରଥମେ ହାତୀ ସଂପର୍କୀୟ ସମ୍ବାଦ ପ୍ରକାଶ ପାଇବା ପରେ ଗୋଟିଏ ଛୋଟ ଏକାଙ୍କିକା ଲେଖି 'ରେଭେନ୍ସାଉଆନ' ରେ ପ୍ରକାଶ କରିଥିଲି । ତା'ର ରୂପ ଅଲଗା ଥିଲା । ତା'ପରେ ଇଂରେଜୀରେ The Floating Elephant ଶୀର୍ଷକ ଏକ ଏକାଙ୍କିକା ଲେଖି ରେଭେନ୍ସା କଲେଜର ପିଲାଙ୍କୁ ନେଇ ଆକାଶବାଣୀରେ କରେଇଥିଲି । ତା'ପରେ ଲେଖାଗଲା ଏଇ ପୂର୍ଣ୍ଣାଙ୍ଗ ନାଟକଟି । ଏଇ ନାଟକର ବିବର୍ତ୍ତନର ତିନୋଟି ଯାକ ସ୍ତରରେ ବାସ୍ତବବାଦର ସୀମା ଲଂଘନ କରାଯାଇଅଛି । ଗୋଟିଏ ନିରାଟ ବାସ୍ତବ ସତ୍ୟରୁ ଆରମ୍ଭ ହୋଇ କ୍ରମଶଃ ଏହା ଏକ ଶୂନ୍ୟତା ଆଡ଼କୁ ଅଗ୍ରଗତି କରିଛି । ଅନ୍ୟଭାଷାରେ କହିଲେ ଆମେ ଯାହାକୁ ସତ୍ୟ ବା ବାସ୍ତବ ବୋଲି ଭାବୁଛୁ ତାକୁ ଏକ ଅସତ୍ୟ ଓ ଅବାସ୍ତବ ବୋଲି ପ୍ରମାଣ କରାଯାଉଛି । ଯେଉଁ ମୁହୂର୍ତ୍ତରେ 'ହାତୀବାବୁ' ଗୋଟିଏ ହାତୀମୁଖା ପିନ୍ଧି ମଂଚ ଉପରକୁ ଉଠି ଆସି ଏକ ଜାନ୍ତବ ଭାଷାରେ ଭାଷଣ ଦେବାକୁ ଆରମ୍ଭ କରିଛନ୍ତି ସେଇଠୁ ସବୁ ବାସ୍ତବତା ଅବାସ୍ତବତାରେ ପରିଣତ ହୋଇଗଲା । ଅର୍ଥାତ୍ ସମାଜ ସ୍ୱୀକୃତ ସତ୍ୟ ବିରୁଦ୍ଧରେ ଏଠାରେ ଘୋର ସଂଦେହ ପ୍ରକାଶ କରୁଛି । ଡଷ୍ଟୋଭସ୍କି, ଷ୍ଟିଭେନ୍ସନ୍, କାଫ୍କା, ଟମାସ୍ ପାଇଞ୍ଚନ୍ ଓ କୁର୍ଟଭନେଗଟ୍ ପ୍ରଭୃତିଙ୍କର କଥା ସାହିତ୍ୟରେ ଏପରି ଏକ ଭିନ୍ନ ପୃଥିବୀର ଚିହ୍ନ ମିଳିଥାଏ । ଏଇ ଭିନ୍ନ ପୃଥିବୀରେ ଧର୍ମଗ୍ରନ୍ଥମାନଙ୍କ ଭଳି ଅଦ୍ଭୁତ ମ୍ୟାଜିକ୍ ଓ ସୁପର-ନ୍ୟାଚୁରାଲ୍ ଘଟଣା ଘଟେ । ମିଥ୍ ଆଉ ଲୋକକଥାମାନଙ୍କରେ ଯେମିତି ପକ୍ଷୀରାଜ ଘୋଡ଼ା ମିଳନ୍ତି, କଥାକୁହା ପକ୍ଷୀ ମିଳନ୍ତି ସେହିଭଳି ହାତୀଟି ଜଣେ ଭାଷାବିଶାରଦଙ୍କ ସଙ୍ଗରେ ରାଜଧାନୀ ପରିକ୍ରମା କରୁଛି । ଏପରି ଏକ ଅତିରଞ୍ଜିତ, କାଳ୍ପନିକ ସାହିତ୍ୟକୁ Rosemary Jackson ତାଙ୍କର Fantasy ନାମକ ପୁସ୍ତକରେ ବର୍ଣ୍ଣନା କରି କହିଛନ୍ତି :

> "It is an inverted form of myth. It focuses upon the unknown with in the present, discovering emptiness inside an apparently full reality. Absence itself is foregrounded, placed at the semantic centre of the text."
>
> (ପୃ-୧୫୮-୧୫୯)

ରାଜଧାନୀରେ ବୁଲୁଥିବା ହାତୀଟିର ଉପସ୍ଥିତି ହିଁ ଏକ ଅନୁପସ୍ଥିତି ବୋଲି ଜଣାପଡ଼ିବ ଏବଂ ଏକ ବିଧିବଦ୍ଧ, ସମାଜ ସ୍ୱୀକୃତ ଚରିତ୍ରର ଅନୁପସ୍ଥିତି ହିଁ ଏଠାରେ ଏକ ଉପସ୍ଥିତି ହୋଇ ଦଣ୍ଡାୟମାନ । ଠିକ୍ ସେହିଭଳି ସାମଗ୍ରିକ ଅର୍ଥ ଦୃଷ୍ଟିରୁ "ହାତୀକୁ ହୋମିଓପାଥି"ର ଅର୍ଥଶୂନ୍ୟତା ହିଁ ଏହାର ଚରମ ଅର୍ଥ, ଯୋଗୀମାନଙ୍କର ଆଧ୍ୟାତ୍ମିକ, ଦିବ୍ୟଦୃଷ୍ଟି ମଧ୍ୟ ଆମପାଇଁ ଅବୋଧ । କାରଣ ଆମେ ସେଇ ଜ୍ୟୋତିର୍ମୟ ପ୍ରକାଶକୁ ସ୍ୱଚକ୍ଷୁରେ ଦେଖି ନାହୁଁ । କେବଳ ତା'ର ସମ୍ଭାବନାକୁ ସ୍ୱୀକାର/ଅସ୍ୱୀକାର କରି ଆସିଛୁ । ସେଇ ଭଳି ହୋମିଓପାଥିର ଉଦ୍ଭଟ ପ୍ରୟୋଗ ଦ୍ୱାରା ହାତୀତ୍ୱର ପରିଣତିରେ କେଉଁ ପ୍ରକାର ରୂପାନ୍ତର ଘଟିଲା ତାହା ଏକ ସମ୍ଭାବନା ମାତ୍ର । କାଫକାଙ୍କର ମି. କେ' ଙ୍କର କ'ଣ ଘଟିଲା ? 'ମେଟାମରଫୋସିସ୍'ର ନାୟକ ହଠାତ୍ ସକାଳୁ କିପରି ଏକ ବୃହତାକାର ପୋକ ହୋଇଗଲା ? ଠିକ୍ ସେହିଭଳି ହକର ପିଲାଠୁ ହୋମିଓପାଥି ଖାଇଲା ପରେ ହାତୀ ଭିତରେ ଏକ ପ୍ରଚଣ୍ଡ ବିସ୍ଫୋରଣ ଘଟିଲା ।

ବିସ୍ଫୋରଣ ଦ୍ୱାରା ଅନ୍ତସ୍ଥ ଶକ୍ତି ବହିସ୍ଥ ହୁଏ । ପଶୁତ୍ୱର ଜରାୟୁ ଚିରି କ'ଣ ବାହାରିଲା ତାହା ଆମ ପାଇଁ ଅବୋଧ ହୋଇପାରେ । କିନ୍ତୁ ଆମେ ସେଥିରେ ମନୁଷ୍ୟତ୍ୱର ସମ୍ଭାବନା ଦେଖିପାରିଲେ ଭଲ । ଏହି ହାତୀତ୍ୱକୁ ଧ୍ୱଂସ କରି ହନେ ଯେ ଏପରି ଏକ ମ୍ୟାଜିକ୍ ହୋମିଓପାଥି ନୂତନ ମାନବିକତା ସୃଷ୍ଟି କରିବ ସେ ସଂପର୍କରେ ମୋର ସଂଦେହ ନାହିଁ । ତେବେ ଏପରି ଏକ ସମ୍ଭାବନାରେ ବିଶ୍ୱାସ କରିବା ନ କରିବା ଦର୍ଶକ/ପାଠକର ବ୍ୟକ୍ତି ଚରିତ୍ର ଉପରେ ନିର୍ଭର କରେ ।

ଯୁକ୍ତି ଓ କାରଣରେ ବିଶ୍ୱାସ କରୁଥିବା ଏବଂ ଏ ପୃଥିବୀରେ ଘଟୁଥିବା ଘଟଣାମାନଙ୍କୁ ଚରମ ସତ୍ୟରୂପେ ଗ୍ରହଣ କରୁଥିବା ପାଠକମାନେ ଏପରି

ଏକ ପରିବେଶକୁ ଅଦ୍ଭୁତ, ଉଦ୍ଭଟ, ଅସାଧାରଣ ବା ଅଜଣା ଅଶୁଣା ବୋଲି କହିପାରନ୍ତି । ସେମାନେ ମନେ ରଖିବା ଉଚିତ ଯେ ସେମାନଙ୍କର ଜନ୍ମ ଓ ଉପସ୍ଥିତି ମଧ୍ୟ ଅନ୍ୟମାନଙ୍କ ପାଇଁ ଅଜଣା, ଅଶୁଣା ଓ ଉଦ୍ଭଟ । ପ୍ରତ୍ୟେକ ଶୃଙ୍ଖଳିତ ଅନ୍ତର୍ବିଶ୍ୱ ପରି ବହିର୍ବିଶ୍ୱ ଏକ entropy । ବହିର୍ବିଶ୍ୱ ଅନ୍ତର୍ବିଶ୍ୱର ସମସ୍ତ ଶୃଙ୍ଖଳାକୁ ଭାଙ୍ଗି ଅନବରତ ବିଶୃଙ୍ଖଳାର ଏକ ସମତଳ ତିଆରି କରିବାରେ ବ୍ୟସ୍ତ । 'ହାତୀକୁ ହୋମିଓପାଥି'ରେ ଏହି ଅଜଣା ଅଶୁଣା ବିଶୃଙ୍ଖଳାକୁ ନାଟକ ମାଧ୍ୟମରେ ତିଆରି କରି ତାକୁ ବୁଝିବା ପାଇଁ ଚେଷ୍ଟା କରାଯାଇଅଛି ।

ହାତୀ, ହାତୀ ବାବା କିମ୍ବା ହାତୀ ସାହୁକାର ଭିତରେ ମଣିଷ କ୍ରମଶଃ କିପରି ପଶୁତ୍ୱ ଆଡ଼କୁ ବଦଳି ବଦଳି ଯାଉଛି ତା'ର ଏକ ରୂପକଳ୍ପ ତିଆରି କରାଯାଇ ଅଛି । ଗ୍ରୀଗୋରୀ ସାମ୍‌ସା ଗୋଟିଏ Giant Beetle ରେ ପରିଣତ ହେବା ପଛରେ ନା ମ୍ୟାଜିକ୍ ଥିଲା ନା ବୈଜ୍ଞାନିକ ଚମତ୍କାରିତା ନା ମଂତ୍ର । ସୁନାହରିଣୀ ଠାରେ ବଦ୍ଧ ହୋଇ ଯେମିତି ମାରିଚ ହୋଇଗଲା ଏହା ସେଭଳି ନୁହେଁ । ଯାହା ଘଟିଲା ତାହା ଗ୍ରୀଗୋରୀ ସାମ୍‌ସାର (Gregory Samsa) ଅବଚେତନର ବ୍ୟାପାର । ସହରର ସବୁ ମଣିଷ କ୍ରମଶଃ ହାତୀ ହୋଇଯାଉଥିବା ରୋଗଟି Rhinocitis ଭଳି ଏକ ବ୍ୟାଧି । Ionesco ଙ୍କର ନାଟକରେ ସେଇଭଳି ଗୋଟାଏ କିଛି ହୋଇଥିଲା । କଲମବାଣୁଆ ଏହି ଗୁରୁତର ବ୍ୟାଧି ସମ୍ପର୍କରେ କହୁଛି :

"ଆପଣ ଜାଣନ୍ତି କି ନାହିଁ ? ହାତୀ ଏକ ରୋଗରେ ପରିଣତ ହୋଇ-ଗଲାଣି । ରାଜଧାନୀରେ ସମସ୍ତଙ୍କର ଗୋଟାଏ ଲେଖା ଶୁଣ୍ଢ ଲମ୍ବୁଛି । ଗଛରେ ଆଉ ନଡ଼ିଆ ରହୁନାହିଁ । ଗୋଡ଼ ଫୁଲି ଯାଉଛି । ହାତୀ ରୋଗ ହୋଇଥିବା ଲୋକେ ପ୍ରଚୁର ଖାଇ ପାରନ୍ତି । ତା'ଛଡ଼ା ରାଜନୈତିକ ମହଲରେ କେବଳ ହାତୀମାନଙ୍କ ଦ୍ୱାରା ସବୁ କାମ ହୋଇପାରୁଛି ।" (ପୃ—୫୫)

ଏପରି ଏକ ହାତୀକୁ ଯିଏ ମାରିବା ପାଇଁ ପ୍ରସ୍ତାବ ଦେଉଛି ତା' ନାଁ କାଳିଆ । ତା' ଅଜା ତାକୁ 'କାଳିଆ ହାତୀ' ବୋଲି ଡାକୁଥିଲେ । କିନ୍ତୁ ସବୁଠାରୁ ବଡ଼ ବିରୋଧାଭାସ ହେଲା ହାତୀବାବା ଲକ୍ଷ୍ମୀକୁ ଧର୍ଷଣର ଉଦ୍ୟୋଗ ହେଲାବେଳେ ମଧ୍ୟ ଗାଉଛନ୍ତି :

କାଳିଆ ହାଣ୍ଡିରେ ମୋର କାଳିଆ ହାଣ୍ଡି
ଚଟଚ ପୁଣି ଦେଖିବାକୁ ବଳନ୍ତି ମଣ୍ଡି
କାଳିଆରେ ଅଗଣ୍ଡ ର ଭୂ' ଘରା ଗଣ୍ଡ
କଳିବାକୁ ଚଟରେ ମୋର ନାହିଁ ଶକତି । (ପୃ-୨୬)

ଭାଷା ପ୍ରୟୋଗ ଦୃଷ୍ଟିରୁ ହଠାତ୍ ଜଗନ୍ନାଥଙ୍କ ଜଣାଣ ଠାରେ ଲାଗୁଥିବା ଏଇ ଗୀତ ବେଳେ ଯାହା ଘଟୁଛି ତାହା ଏକ ଧର୍ଷଣ । ନାଟକ ଆଗେଇ ଯାଉଥିଲା ବେଳେ କ୍ରମଶଃ ହାଣ୍ଡିଟା ଏକ ଅଜଣା ରହସ୍ୟ ହୋଇଯାଏ । ଅନ୍ତିମାନେ ହାଣ୍ଡିକୁ ବର୍ଣ୍ଣନା କଲା ଭଳି ନାଟକର ଶେଷ ଆଡ଼କୁ ହତଭାଗ୍ୟ ଯୁବକମାନଙ୍କର ବିଭିନ୍ନ ଭୂମିକାରେ ଅଭିନୟ କରୁଥିବା କଳାକାରଟି କହୁଛି :

"ସାର୍ ! ଏ ହାଣ୍ଡି ଟାଙ୍ଗିଆରେ ମରିବନି, ଏଇଟା ପରା ନିଜେ ଦୁର୍ମତି, ନିଜେ ପାପର ଅବତାର । ଏଇଟା ପରା ମଣିଷ ଭିତରର ସେଇ ଆଦିମ ହାଣ୍ଡିଟା ସାର୍ ! ଅଙ୍କୁଶ ନାହିଁ...ମାହୁନ୍ତ ନାହିଁ..."
(ପୃ-୪୬)

ନାଟକ ସାରା ବିଭିନ୍ନ ଉପାୟରେ ହାଣ୍ଡିଟାକୁ ଶର୍ଦ୍ଧିବାକୁ ଚେଷ୍ଟା କରାଯାଉଛି । ହାଣ୍ଡି ସମ୍ପର୍କରେ ଦୁଇଜଣ ଗବେଷକ ଗବେଷଣାରତ । କଲମ ବାଣୁଆ ଓ କଲମ-ବାଣୁଆ ଖବୁଛନ୍ତି ହାଣ୍ଡିଟା ମରିଯାଇଛି, ତା' ହେଲେ entropy ଭଳି ସୁନିୟନ୍ତ୍ରିତ ରାଜଧାନୀ ଓ ଜୀବନ ଭିତରକୁ ଯାହା ପଶି ଆସିଲା ସିଏ କିଏ ?

ରବର୍ଟ ସୋଲ୍‌ସ ଏଇ ପ୍ରକାର ଲେଖାକୁ Self-reflexive ବୋଲି ଆଖ୍ୟା ଦେଇଛନ୍ତି । ନାଟକର ନାଟକୀୟତା ସମ୍ପର୍କରେ ନାଟକ । ନାଟ୍ୟାର୍ଥର ଅସମାହିତ ପ୍ରଶ୍ନ ସଂପର୍କରେ ଅସମାହିତ ପ୍ରଶ୍ନ । ଦୁର୍ବୋଧ ହାଣ୍ଡିଟାକୁ ବୁଝିବାକୁ ଯାଉ ଯାଉ ଆଉ ଏକ ଦୁର୍ବୋଧତାର ଶିକାର ହୋଇ ପଡ଼ିବା ଅବସ୍ଥା Jorge Louis Borges ଙ୍କର Labyrinths, John Barth ଙ୍କର Lost in the Fun House କିଂବା Italo Calvino ଙ୍କର Invisible Cities ରେ ଏଇ ପ୍ରକାର ଅବସ୍ଥା ଲକ୍ଷ୍ୟ କରାଯାଏ । ଦୁର୍ଭାଗ୍ୟ ବଶତଃ ଓଡ଼ିଆ ସାହିତ୍ୟରେ Auto-referential ବା Self-reflexive ଲେଖାର ଦୃଷ୍ଟାନ୍ତ ବିଶେଷ ଭାବରେ ଅଭାବ । ଫାଣ୍ଟାସି ମନୋଜ ଦାସଙ୍କୁ

ଛାଡ଼ିଦେଲେ ବୋଧହୁଏ ଆଉ କାଏ ଲେଖୁ ନାହାନ୍ତି । ଏପରି ଅବସ୍ଥାରେ ବହୁ-ଅର୍ଥ ବିଶିଷ୍ଟ ଗୋଟିଏ ଦୃଶ୍ୟକଳ୍ପ ସୃଷ୍ଟି କଲେ ତାକୁ ବୁଝିବା ଆମ ସମାଲୋଚକମାନଂକ ପାଇଁ କଷ୍ଟକର ହୋଇପାରେ ।

ଏଠାରେ ହାଣ୍ଡି ଏକ ବହୁଅର୍ଥ ବିଶିଷ୍ଟ ରୂପକଳ୍ପ ଓ "ହାଣ୍ଡିକୁ ହୋମିଓପାଥି"ର ବିଭାବଗୁଡ଼ିକ ମଧ୍ୟ ବହୁମୁଖୀ । ମାର୍କିନ କବି ଓ୍ୱାଲେସ୍ Thirteen ways of looking at a Blac ବୋଲି ଗୋଟିଏ କବିତା ଲେଖିଥିଲେ । ବର୍ତ୍ତମାନ ହାଡୀ ନାଟକ ପାଇଁ ମୁଖବଂଧ ଲେଖିଲା-ବେଳେ ସେଇ କଥା ମନେ ପଡୁଛି । ନାଟକଟାକୁ କେଉଁ ଦିଗରୁ ଦେଖାଯିବ ? ବିଭିନ୍ନ ଦିଗରୁ ଦେଖାଗଲେ ନାଟକର ଅର୍ଥ ବାହାର କରିବା ପାଇଁ ସୁବିଧା ହେବ କି ? ଅସଲ କଥା ଇଂନ୍ଦ୍ରଧନୁର ସାତୋଟି ରଂଗ ପରସ୍ପରଙ୍କ ଉପରକୁ ମାଡ଼ିଗଲା ଭଳି ନାଟକର ବିଭିନ୍ନ ଅର୍ଥ ପରସ୍ପରଙ୍କ ଉପରେ ଲୁଚି ହୋଇଯାଉଛଂନ୍ତି । Robert Scholes ଯଥାର୍ଥରେ କହିଛନ୍ତି :

All interpretive criticism amounts to this. That is the limitation of such criticism... .. It clarifies, at the expense of reducing the experience of fiction, through which we know a work, to a discussion through which we 'know about' it. Thus its only use is to prepare us to encounter or re-encounter the primary material, the work itself." (The Fabulators, 1967, P. 141)

ବହୁ ଅର୍ଥର ସମ୍ଭାବନା ଥିବା ଏହି ନାଟକ ପାଇଁ ମୁଖବନ୍ଧଟିଏ ଲେଖିଲା ବେଳେ ମୁଁ କୌଣସି ନିର୍ଦ୍ଦିଷ୍ଟ ଅର୍ଥର ସପକ୍ଷରେ କହିବା ପାଇଁ ଚାହୁଁନାହିଁ । କାରଣ ସୃଷ୍ଟି ଓ ସମୀକ୍ଷା ଦୁଇଟା ଅଲଗା ସ୍ତର । ଏହା ନାଟକର ସମୀକ୍ଷା ମଧ୍ୟ ନୁହେଁ । ସମୀକ୍ଷାର ଦିଗନ୍ତ ଉନ୍ମୋଚନ ମାତ୍ର । ଭବିଷ୍ୟତର ବ୍ୟାଖ୍ୟା-କାରମାନେ ଏପରି ଏକ ପୁସ୍ତକର ସାମ୍ନା କଲାବେଳେ ଏହା ହୁଏତ ସେମାନଙ୍କୁ ସାହାଯ୍ୟ କରିବ ।

ବହୁଅର୍ଥ ଅଛିର ଗୋଟିଏ ଅର୍ଥ ହେଲା କୌଣସି ନିର୍ଦ୍ଦିଷ୍ଟ ଅର୍ଥ ନାହିଁ । ପୁସ୍ତକଟିକୁ ଗୋଟିଏ ବାଦାମ ଭଳି ତା'ର ଖୋଳ ଛଡ଼େଇଲେ ସେଇଥିରୁ ଗୋଟିଏ ସ୍ୱାଦିଷ୍ଟ ମଞ୍ଜି ବାହାରିବ ବୋଲି ଆଶାକରି ସମାଲୋଚକ

ଆବେଦନ ଯାଏ । ରହସ୍ୟ ସଂଧାନୀ ଡିଟେକ୍ଟିଭ୍ ଭଳି । ଯାହା ପାଏ ତାକୁ ପ୍ରଥମ ଅଟଳ ସତ୍ୟ ବୋଲି ମନେକରେ । କିନ୍ତୁ ନାଟକଟି ରହସ୍ୟବାଦୀ ନ ହୋଇ ଗୋଟିଏ ପିଆଜ ମଧ୍ୟ ହୋଇପାରେ । ପରସ୍ତ ପରସ୍ତ ଖୋସା ତଳେ ଆଦୌ ମଞ୍ଜି ନଥାଇ ପାରେ, ଆଦୌ ଅର୍ଥ ନଥାଇ ପାରେ ।

ଆମର ଏଇ ବେପାରୀ ସଭ୍ୟତାରେ ଗ୍ରାହକମାନଙ୍କ ପାଇଁ ନାଟକରେ "ଭଲ ମାଲ୍ ଅଛି" ବୋଲି କିଛି ବିଜ୍ଞାପନ ଦିଆଯାଇପାରେ । କିନ୍ତୁ ନାଟ୍ୟକଳାକୁ ଏଠାରେ ମୁଁ product ବା ବିକ୍ରୟ ପାଇଁ ଉଦ୍ଦିଷ୍ଟ ବସ୍ତୁ ବୋଲି ଭାବି ନାହିଁ । ଏହା ଏକ ନିରନ୍ତର ଅନ୍ବେଷଣର ଗୋଟାଏ ମୁହୂର୍ତ୍ତ । ଗୋଟାଏ ଦୃଶ୍ୟକଳ୍ପକୁ ଗଢ଼ି ତୋଳିବାର ପ୍ରଚେଷ୍ଟା । ଏଣୁ ନାଟକଟିକୁ ଗୋଟିଏ product ନ ଭାବି ଅନ୍ବେଷଣର process ବୋଲି ଭାବିଲେ ମୁଁ ଖୁସି ହେବି ।

କିନ୍ତୁ ଏହା ଯେତେବେଳେ ହଜାର ହଜାର ଗ୍ରାହକଙ୍କ ଆଗରେ ପରିବେଷିତ ହେବ ମୁଁ ସେମାନଙ୍କର ଗୃହିଦାକୁ ଏଡ଼ାଇ ଦେଇ ପାରିବି ନାହିଁ । ଏଥିରେ ମଧ୍ୟ ଲୋକଚିତ୍ତକୁ ଆକର୍ଷିତ କରି ରଖିବାର ଉପାୟ ରହିଛି । କିନ୍ତୁ ଏହି ନାଟକର ପରୀକ୍ଷା କେବଳ ଚିତ୍ତବିନୋଦନ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହାର ବିଷୟବସ୍ତୁ ଓ ଶୈଳୀକୁ ଦୈନନ୍ଦିନ ଜୀବନରେ ବ୍ୟବହାର କରାଯାଇ-ପାରେ । ବ୍ୟବହାର ଯୋଗ୍ୟ କରିବା ପାଇଁ କୌଣସି ପ୍ରାକ୍ ପ୍ରସ୍ତୁତି ନ କରିଥିଲେ ମଧ୍ୟ ପାଠକ ଓ ଦର୍ଶକ ପୃଥିବୀକୁ ଆଉ ଏକ ନୂଆ ଦୃଷ୍ଟିକୋଣରୁ ଦେଖିବାର ସୁଯୋଗ ପାଇବେ ।

ବର୍ତ୍ତମାନ ପରିବେଷଣ ଶୈଳୀ ଦୃଷ୍ଟିରୁ ନାଟକଟିକୁ ବିଚାର କରାଯାଉ । ଥରେ ଆକାଶବାଣୀ ପାଇଁ ମୁଁ ଇଂରେଜୀରେ The Floating Elephant ର ନିର୍ଦ୍ଦେଶନା ଦେଇଥିଲି । ବିଶେଷ କିଛି ମନେ ରଖିଲି ଭଳି ଘଟିଲି ନାହିଁ । କିନ୍ତୁ ସମ୍ପୂର୍ଣ୍ଣ ନାଟକଟିକୁ ପରିବେଷଣ କଲାବେଳେ ମୁଁ ବହୁ ସ୍ଥାନରେ ଓଡ଼ିଶୀ ମୁଦ୍ରାର ପ୍ରୟୋଗ କରିଛି । ଏଥିପାଇଁ ଓଡ଼ିଶୀ ନୃତ୍ୟ ଶିକ୍ଷକ-ମାନଙ୍କର ସାହାଯ୍ୟ ନେଇଛି । ବାରିପଦାଠାରେ ଗଞ୍ଜାମ କଳା ପରିଷଦର ମଂଚ ଶୈଳୀରେ ପରୀକ୍ଷା କରିବା ପାଇଁ ବିଶେଷ ସମୟ ମିଳିନଥିଲା । ପରେ ଓଡ଼ିଶୀ ମୁଦ୍ରା ଓ ଦୃଶ୍ୟକଳ୍ପ ଗଠନ କରି ଏହାକୁ ପରୀକ୍ଷା କରାଗଲା ।

ଏହି ଦୃଷ୍ଟିରୁ 'ହାତୀକୁ ହୋମିଓପାଥି' ର ଆରମ୍ଭ ଏକ ରୂପକଳ୍ପରୁ —ଭାଷାରୁ ନୁହେଁ, ନୈତିକ ବିଶ୍ୱାସରୁ ନୁହେଁ, ଚରିତ୍ରରୁ ନୁହେଁ, ସଂଘାତରୁ ନୁହେଁ କିମ୍ବା କଥାବସ୍ତୁରୁ ନୁହେଁ । ମରିଯାଇଥିବା ହାତିଟା ମଂଚ ଉପରେ ବୁଲିବୁଲି କଥା କହିଲେ କେମିତି ଦିଶିବ ସେଇ କଳ୍ପନାରୁ ନାଟକ ଆରମ୍ଭ । ଏ ରୂପକଳ୍ପ କବିତାର ରୂପକଳ୍ପ ନୁହେଁ । ଚିତ୍ରକରଟିଏ କ୍ୟାନ୍‌ଭାସ ଉପରେ ରଂଗ ବୋଳି ବୋଳି ଯେଉଁ ରୂପ ତିଆରି କରେ ଏହା ପ୍ରାୟ ସେଇଭଳି । ପଥର ଖଣ୍ଡେ ଖୋଳି ଖୋଳି ଭାସ୍କର ଯେପରି ଗୋଟିଏ ଆକାର ଗଢ଼େ ଠିକ୍ ସେଇ ପରି । ଗୋଟିଏ ଆକାର ଆଉ ଗୋଟିଏ ଆକାର ପାଖରେ ରହିଲେ (Juxtaposition) ଯେଉଁ ତୃତୀୟ ଆକାର ତିଆରି ହୁଏ ମୁଁ ତାହା ସହିତ ସଂପୃକ୍ତ ।

ଚରିତ୍ର ନିର୍ମାଣ ଓ ଘଟଣାର ସଜ୍ଜୀକରଣ ପ୍ରକ୍ରିୟା ଉପରୋକ୍ତ ନିୟମରେ କରାଯାଇଥିବା ଯୋଗୁଁ ସ୍ଥାନ ଓ କାଳର କ୍ରମିକତା ଏହି ନାଟକରେ ଆବଶ୍ୟକ ହୋଇ ନାହିଁ । ସ୍ଥାନେ ସ୍ଥାନେ ଯୁକ୍ତିର କ୍ରମ ମଧ୍ୟ ଲଂଘନ କରା-ଯାଇଛି । ଅର୍ଥାତ୍ ସାହିତ୍ୟିକ ବ୍ୟାକରଣ ପରିବର୍ତ୍ତେ ଏହି ନାଟକରେ ଚିତ୍ର-କଳା ଓ ଭାସ୍କର୍ଯ୍ୟର ବ୍ୟାକରଣ ପ୍ରୟୋଗ କରାଯାଇଅଛି । 'ଶେଷପାହାଚ' ଓ 'ଅଂଧନଦୀରସୁଅ' ନାଟକମାନଙ୍କରେ ମଧ୍ୟ ଚିତ୍ର କଳା ଓ ଭାସ୍କର୍ଯ୍ୟ ପ୍ରଭୃତିର ନିୟମ ପ୍ରୟୋଗ କରାଯାଇଥିଲା । କିନ୍ତୁ ନୈତିକ ମୂଲ୍ୟବୋଧ ଓ କାହାଣୀ ଉପରେ ଅଧିକା ଗୁରୁତ୍ୱ ଥିଲା । ଏଠାରେ ନାଟକ ଦୃଶ୍ୟକାବ୍ୟର ଲକ୍ଷଣ ରକ୍ଷାକରିବା ସଙ୍ଗେ ସଙ୍ଗେ ଏକ ଦୃଶ୍ୟକଳାରେ ପରିଣତ ହେଲା । ଦର୍ଶକ ମନରେ କଳାର ପ୍ରଭାବକୁ ଆହୁରି ଅଧିକ ପ୍ରଖର କରିବା ହେଲା ମୋର ଉଦ୍ଦେଶ୍ୟ । Morse Peckham ତାଙ୍କର Art and Disorder ନାମକ ପ୍ରବଂଧରେ କଳାର ପ୍ରଭାବ ସଂପର୍କରେ କହିଛନ୍ତି :

One of the most common criteria for excellence in art is that it serves as a stimulus for intense emotion. Now there are only two ways emotion can be elicited; by presenting a sign configuration to which the perceiver is conditioned to respond emotionally, or by disorienting them, by violating his expectations, by offering the occasion for a discontinuity of perceptual

experience." (Aesthetics Contemporary Ed. Richard Kostelanetz, P. 107)

ମୁଁ 'ଶେଷପାହାଡ଼', 'ଅଂଧନଗର ସୂଅ', 'ସ୍ୱପ୍ନସବୁ ବଂଦ' ଏବଂ 'ହାତୀକୁ ହୋମିଓପାଥି' ରେ ବିକ୍ଷିପ୍ତ ପନ୍ଥାଟି ଅନୁସରଣ କରିଛି । (By offer-ing the occasion for a discontinuity of perceptual experience)

ଏହାଦ୍ୱାରା ନାଟକର ଶେଷ ଅବସ୍ଥାରେ ହାତୀକୁ ହୋମିଓପାଥି ଦିଆହେବା ଅବସରରେ ଗୋଟିଏ psychedelic ଅନୁଭୂତିର କଳ୍ପନା କରିଛି । ତାହା ପ୍ରଳୟର ମୁହୂର୍ତ୍ତ । ବହିର୍ବିଶ୍ୱ ଓ ଅନ୍ତର୍ବିଶ୍ୱ—ଉଭୟର ପ୍ରଳୟ । ସେଇ ମୁହୂର୍ତ୍ତରେ ଧାରାବାହିକ ସମୟ ଏବଂ ଇତିହାସ ମଧ୍ୟ ସତ୍ତା ହରାଇ ଦିଅନ୍ତି । ଆମେ ସେଇ ଅଦୃଶ୍ୟ ହାତୀ, ମୃତଶିଶୁ, ଫ୍ରିଜ୍ ହୋଇ ରହିଥିବା ଅନ୍ୟାନ୍ୟ ଚରିତ୍ର ଓ ତା' ଉପରେ ଠଳ ପଡ଼ି ଲୁହ ଝରାଉଥିବା ଲକ୍ଷ୍ମୀର tableaux ଭିତରେ ଯେଉଁ ଶୈଳ୍ପିକ ଆକାର ବା ରୂପକଳ୍ପକୁ ଅଧାନାଲି ଓ ଅଧା ସବୁଜ ରଂଗ ମାଧ୍ୟମରେ ଦେଖୁ ତା'ର ଅନୁଭୂତି ମଧ୍ୟ ଇତିହାସର ପୂର୍ବାବସ୍ଥା ପ୍ରାକ୍ ଐତିହାସିକ, ବା ଆଦିମ । ଏହା ଏକ "ଚିରନ୍ତନ ପ୍ରାରମ୍ଭ"ର ଶିଳ୍ପ । ଙ୍କର Grecian Urn ର ମୁଦ୍ରିତ ଛବିମାନଙ୍କ ଭଳି । ସତେ ଯେମିତି ଚିରଦିନ କାଳଆ ଭଳି ପିଲାମାନେ ହାତୀକୁ ହୋମିଓପାଥି ଦେଉଦେଉ ତା'ର ପାହୁଣ୍ଡତଳେ ନିଷ୍ପିଷ୍ଟ ହେବେ ! ଲକ୍ଷ୍ମୀଭଳି ହତଭାଗିନୀମାନେ ଲୁହ ଝରାଉଥିବେ ଅଥଚ ସେ ଲୁହ କାଳଆ ଉପରେ ଝରିପଡ଼ିବା ପୂର୍ବରୁ ଅଧା ବାଟରେ, ଶୂନ୍ୟସ୍ଥାନରେ ହିଁ ଝୁଲି ରହିଯିବ ଏବଂ ଅନ୍ୟ ଚରିତ୍ରମାନେ ଅସହାୟ ଦର୍ଶକମାନଙ୍କ ପରି କ୍ରନ୍ଦନ କରି ନପାରି ପଥର ପାଲଟି ଯିବେ ।

ଏହା ନାଟକୀୟ ପଞ୍ଚସନ୍ଧିର ଶେଷ ସନ୍ଧି ନୁହେ । କୌଣସି ସାମାଜିକ ବା ମନସ୍ତାତ୍ତ୍ୱିକ ସଙ୍ଘାତର ଉପସଂହାର ନୁହେ । କୌଣସି ସମୀକରଣ ନୁହେ । ଲିଖିତ ବା ଉଚ୍ଚାରିତ ଶବ୍ଦ ମାଧ୍ୟମରେ ଦିଆଯାଇଥିବା ବାର୍ତ୍ତା ମଧ୍ୟ ନୁହେ । ଏହା ଏକ ଅନୁଭୂତି । ଏପରି ଏକ ଅନୁଭୂତିକୁ ଶବ୍ଦ ମାଧ୍ୟମରେ ପ୍ରକାଶ କରିବା ସମ୍ଭବ ନୁହେ ।

**କଟକ** **ରମେଶ ପାଣିଗ୍ରାହୀ**

ତା ୨୮-୮-୮୭

# ହାତୀକୁ ନେହାନିଉପାୟ

[ଝୁଲ୍ କୋଳାହଳ, ଭୟମିଶ୍ରିତ ଚିତ୍କାର ସବୁ । ଏ ସବୁକୁ ଟପି ଶୁଭୁଛି, ଏକ ହାତୀର ଚିତ୍କାର ଗର୍ଜନ ।

ପରଦା ଉଠିଲା ବେଳକୁ—ମଞ୍ଚ ଉପରେ ଗୁଡ଼ାଏ ଚରିତ୍ର ବିକଳରେ,ଦୌଡ଼ାଦୌଡ଼ି କରୁଛନ୍ତି । ସାଇକଲ୍ ଚଢ଼ାଳୀ, ଫେରିବାଲା, ଅଫିସ ଯିବା ଲୋକ । କିଏ କାହା ଉପରେ ପଡ଼ି ଗଲଣି ତ, କିଏ କାହା ଉପରେ ଚଢ଼ିଗଲଣି । ସମସ୍ତଙ୍କ ମୁହଁରେ ସେହି ଗୋଟାଏ ଶବ୍ଦ "ହାତୀ" !

ଏତିକିବେଳେ ରେଡ଼ିଓରୁ ଅତି ମଧୁର/ଗଂଭୀର ସ୍ୱରରେ ଶୁଭିଲା — ]

ରେଡ଼ିଓ ।। ଆକାଶବାଣୀ ! ଶୁଣନ୍ତୁ ହାତୀ ସମ୍ପର୍କରେ ଏକ ସ୍ୱତନ୍ତ୍ର ଘୋଷଣା । ଗତ ବନ୍ୟାରେ ମହାନଦୀ ସ୍ରୋତରେ ଭାସି ଆସିଥିବା ହାତୀଟି ଅକସ୍ମାତ୍ ରାଜଧାନୀ ଭିତରେ ପଶି ଯାଇଛି । ହାତୀ ମାଡ଼ି ଚାଲିଥିବା ରାସ୍ତାରେ ଦୋକାନ,ବଜାରରେ ଓ ଅଫିସ ମାନଙ୍କରେ କୋଟି କୋଟି ଟଙ୍କା ଓ ବହୁ ପଶୁ, ପକ୍ଷୀ, କୀଟ, ପତଙ୍ଗ ଓ ମନୁଷ୍ୟମାନଙ୍କର ଜୀବନ ନଷ୍ଟ ହୋଇଛି ବୋଲି ଆମର ସ୍ୱତନ୍ତ୍ର ସମ୍ବାଦଦାତା ଖବର ପଠାଇଛନ୍ତି । ଏ ପର୍ଯ୍ୟନ୍ତ ସରକାରଙ୍କ ପାଖରେ କ୍ଷୟକ୍ଷତିର ସମ୍ପୂର୍ଣ୍ଣ ବିବରଣୀ ପହଞ୍ଚି ନାହିଁ । ହାତୀ ଉପଦ୍ରୁତ ଅଞ୍ଚଳମାନଙ୍କୁ ଅତି ଶୀଘ୍ର ରିଲିଫ୍

ପଠାଯିବାର ବ୍ୟବସ୍ଥା କରାଯାଉଛି । ହାତୀଟିକୁ ଜୀବନ୍ତ କମ୍ବା ମୃତ
ଅବସ୍ଥାରେ ଧରି ଆଣି ନିକଟବର୍ତ୍ତୀ ପୋଲିସ୍ ଥାନାରେ ହାଜର
କରେଇ ପାରିଲେ ପାଞ୍ଚଲକ୍ଷ ଟଙ୍କା ପୁରସ୍କାର ଦିଆଯିବ ବୋଲି
ଏକ ସରକାରୀ ଇସ୍ତାହାରରେ ଘୋଷଣା କରାଯାଇଛି ।

[ଘୋଷଣା ଶେଷହେବା ପରେ ମଧ୍ୟ
ସେଇ ଭଳି ଦୌଡ଼ାଦୌଡ଼ି ଲାଗି ରହିଛି
ଓ 'ହାତୀ' 'ହାତୀ' ବୋଲି ଚିତ୍କାରମାନ
ଶୁଭୁଛି । ଏହି ଗହଳି ଭିତରେ ଜଣେ
ବୃଦ୍ଧ ଓ ଆଉ ଜଣେ ଯୁବକ ଗୋଟାଏ
ସ୍ଥାନରେ ଲୁଚିଥିବା ଦେଖାଗଲା ।
କ୍ରମଶଃ ଚିତ୍କାର ଟିକିଏ ଦୂରେଇ ଗଲା ।
ବୋଧହୁଏ ହାତୀଟା ଅନ୍ୟ ରାସ୍ତାରେ
ଚାଲିଗଲା । ବୃଦ୍ଧ ଜଣକ ମୁଣ୍ଡ ଟେକି
ଚାହିଁଲେ । ଥରେ ବାହାରକୁ ଓ ଆଉ-
ଥରେ ପାଖରେ ଥିବା ଅଚହ୍ନା ଯୁବକଟିକୁ ।
ତା'ପରେ କହିଲେ—]

ବୃଦ୍ଧ ॥ ଚାଲ ବାବୁ, ଚାଲ । ଆଉ ରହିଲ କାହିଁକି ?

ଯୁବକ ॥ ମୋର ଧଇଁ ଉଠିଗଲାଣି ମଉସା । ଟିକିଏ ରହିଯାଅ । ହାତୀଟା ଏପଟକୁ
ଆସିବ ନାହିଁ ।

ବୃଦ୍ଧ ॥ କିଏ କହିବ ? ସାରା ରାଜଧାନୀଟାକୁ ସେତେବେଳେ ଛନଛନ କରି
ଦେଲାଣି, ଓହୋ ! କି କାଳ ଆଇଲା ପୁଅ ଦେଖେତ... ଚାଲ—ଚାଲ
ଏଇଠୁ ପଳେଇବା—

ଯୁବକ ॥ କୁଆଡ଼େ ଯିବ ?

ବୃଦ୍ଧ ॥ କୋଉଠି ଲୁଚିଯିବା, ଏ ଜାଗା ନିରାପଦ ନୁହେଁ ।

ଯୁବକ ॥ କୋଉଠି ଲୁଚିବ ? ଏତେ ବଡ଼ ରାଜଧାନୀ, ଚଉଡ଼ା ଚଉଡ଼ା ରାସ୍ତା—
ଲୁଚିବା ପାଇଁ ଜାଗା କାହିଁ ?

ବୃଦ୍ଧ ॥ ଅଛି । ଏଇଠି ବି ଅନେକ ବୁଦା, ଭଙ୍ଗାଘର, ଜଙ୍ଗଲ ଅଛି । ମତେ
କାହିଁକି ଏଇଠି ଭଲ ଦିଶୁନି ।

ଯୁବକ ॥ ତମେ ଟିକେ ମଉସା । ଦୌଡ଼ିବା ପାଇଁ ଆଉ ପାଦରେ ମୋର ଶକ୍ତି ନାହିଁ । ତିନଦିନ ହେଲା ଉପାସ । ମୁଣ୍ଡଟା ବି କାମ କରୁନି ।

ବୃଦ୍ଧ ॥ କାହିଁକି ? ଉପାସ କାହିଁକି ?

ଯୁବକ ॥ ଚାକିରି ଖୋଜିବା ପାଇଁ ଆସିଥିଲି । ସବୁ ହଜିଗଲା ।

ବୃଦ୍ଧ ॥ ଆହା ! କୋଉଠି ?

ଯୁବକ ॥ ରାଜଧାନୀରେ ।

(କିଛି ସମୟ ନୀରବତା ପରେ)

ତମେ ଯାଉନ ମଉସା ! ମାଅ—

ବୃଦ୍ଧ ॥ ଯିବି ଯେ...ଏକେଲା ଟା ମନେ ଡ଼ର ମାଡ଼ୁଛି ବାପା ! ତମେ ଆସୁନ, ଲୁଟିବା ପାଇଁ ଅନେକ ଯାଗା ଅଛି ।

ଯୁବକ ॥ ଗତ ଥର ଷ୍ଟ୍ରାଇକ୍ ବେଳେ ପୋଲିସ୍ ଯେତେବେଳେ ଗୋଡ଼େଇଲା ଆମେ ବି ଲୁଟି ଯାଇଥିଲୁ ଯେ ! ଏଇ ଷଣିକା ଆଉ ମୁଣ୍ଡଟା କାମ କରୁନି !

ବୃଦ୍ଧ ॥ ହାତୀଟା କୋଉଠୁ ଆସିଲା କି ପୁଅ ?

ଯୁବକ ॥ ମୁଁ କ'ଣ ଜାଣିଚି ? ସେଇ ତିନି ନଂବର ଆଡ଼ୁ ତ ଦୌଡ଼ି ଦୌଡ଼ି ଆସିଲା—

ବୃଦ୍ଧ ॥ କ'ଣ ସେଇ ସର୍କସ ପଡ଼ିଆ ଆଡ଼ୁ ?

ଯୁବକ ॥ ତିନି ନମ୍ବରରେ ଗୋଟେ ସର୍କସ ପଡ଼ିଆ ଅଛି କି ?

ବୃଦ୍ଧ ॥ ସେଇ ଯୋଉ ସର୍କସ ଚାଲିଚି ବା ! ହଇଏ ବାପା ! ଏଇଟା ସର୍କସ ହାତୀ ନୁହେଁ ତ ! ଯେମିତି ଖୋଜି ଖୋଜି ଖୋଜି ଲୋକଙ୍କୁ ମାରୁଛି ମତେ ଲାଗୁଚି ଆଗରୁ ଟ୍ରେନିଂ ପାଇଚି କି ଆଉ ?

ଯୁବକ ॥ ତା' ମାନେ ? ଏ ଦେଶଟାକୁ ଧ୍ୱଂସ କରିଦେବା ପାଇଁ ତାକୁ ଟ୍ରେନିଂ ଦିଆହୋଇଛି ବୋଲି ଭାବୁଛନ୍ତି ଆପଣ ? ହୋଇଥିବ ! ମୁଁ ଜାଣିନି ।

ବୃଦ୍ଧ ॥ ଆଜି ସରକାରୀ ଅଫିସ ସବୁ ବନ୍ଦ ତ ?

ଯୁବକ ॥ ସେମିତିଆ ତ ଲାଗୁଛି ! ଆମେ ସିନା ଯାଇ ପାରିବାନି; କାର୍ ମଟର୍‌ବାଲା ତ ଯାଉଥିବେ ! କାହିଁ ? ରାସ୍ତା ତ ଖାଲି ।

ବୃଦ୍ଧ ॥ ହାତୀ ଯୋଉଠି ଟ୍ରେନ୍ ଓଲଟେଇ ଦେଉଛି ସେଇଠି କାର୍ ଗୁଡ଼ାକ ତ ଟେନିସ୍ ପେଣ୍ଡୁ ।

ଯୁବକ ।। ସେସ୍ତା ପରା, ଆଜି କେହି ଅଫିସ ଯାଇ ନଥିବେ । ଦେଖୁନାହାନ୍ତି ? ଦୋକାନ ବଜାର ସବୁ ବନ୍ଦ । ରାଜଧାନୀଟା ହୁଲସ୍ଥୁଲ ହେଇଗଲଣି ।

ବୃଦ୍ଧ ।। ମୋ' ଝିଅଟା କଲେଜ ଯାଇଥିଲା...ଫେରିବ କେମିତି ଭାବୁଛୁ ।

ଯୁବକ ।। ଆହା ! ମଉସା, ଆଜି ଭଲଆ ଗୋଟେ ଦିନରେ ଝିଅଟାକୁ ଆପଣ କଲେଜ ଛାଡ଼ିଦେଲେ ? ହାତୀଟା ଯାହା ଅସୁବିଧା କଲଣି—ଦାଣ୍ଡ ବାଟରେ କୋଉଠି ତମ ଝିଅକୁ ଦେଖିବ ..

ବୃଦ୍ଧ ।। ଭଗବାନ ଅଛନ୍ତି ! ମତେ ତ ଲାଗୁଚି ବାପା ଇଏ ହାତୀ ନୁହେଁ । ସ୍ୱୟଂ ଜଗନ୍ନାଥ । ହାତୀ ଅବତାର ହେଇ ସଂହାର କରୁଛନ୍ତି !

ଯୁବକ ।। ହେଇଥିବ । ଆମେ ତ ପାପୀ ଲୋକ ବୋଲି ଏ ପର୍ଯ୍ୟନ୍ତ ଟଣ୍ଡେ ଚକର ହେଇ ପାରିଲୁନ । ନହେଲେ ଆଜି ହାତୀଟା ମତେ ଗୋଡ଼େଇଲା କାହିଁକି ?

ବୃଦ୍ଧ ।। ଏଁ ! ହାତୀଟା ତମକୁ ଗୋଡ଼େଇ ଥିଲା ?

ଯୁବକ ।। ହଁ ମଉସା, ମୋ' ଆଡ଼କୁ ତ ଧସେଇ ଆସିଲା...ଶୁଣ୍ଢଟାକୁ ଟେକି ଏମିତି ଗୋଡ଼େଇଲା ଯେ ମୁଁ ଭାବିଲି .ଆଜି ପୈତୃକ ପ୍ରାଣଟା ଏଇ ରାସ୍ତା ଉପରେ ହିଁ ଉଡ଼ିଯିବ । ସେଇଠୁ ମଉସା, ମୁଁ ଦୌଡ଼ିଲି । କୋର୍‌ଟରେ ଦୌଡ଼ି ପାରୁଛୁ କୋଉଠି ? ପେଟ ଭିତରେ ତ ଭୋକର ଆଉ ଗୋଟେ ହାତୀ ଦୌଡ଼ୁଛୁ ! ଯେ କୌଣସି ମତେ ପ୍ରାଣ ବଞ୍ଚେଇ ଏଇଠି ପହଞ୍ଚିଗଲି । ତା'ପରେ ତ ତମକୁ ଦେଖିଲି । ଆଚ୍ଛା ମଉସା,ହାତୀଟା ତମକୁ ଗୋଡ଼େଇନ ?

ବୃଦ୍ଧ ।। ଆରେ ବାପା ମୋର କ'ଣ ଅଛି ଯେ ମତେ ଗୋଡ଼େଇବ ? ନା କ୍ଷେତ ଅଛି ନା ବାଡ଼ି ବଗିଚା ।

ଯୁବକ ।। ଆପଣ ତା'ହେଲେ ପୁଣ୍ୟବାନ୍ ଲୋକ ! ମୁଁ ଭାବୁଛି, ଆପଣଙ୍କ ସାଙ୍ଗରେ ଗଲେ ଆଉ କିଛି ବିପଦ ରହିବ ନାହିଁ ।

ବୃଦ୍ଧ ।। ନାହିଁରେ ବାପା ତୋ' ବାଟେ ତୁ ଯା'—ମୋ' ସାଙ୍ଗରେ କାହିଁକି ଆସିବୁ ?

ଯୁବକ ।। ଚାଲ । ତମ ଝିଅଟା କଲେଜ ଯାଇଛି ପରା, ତାକୁ ପ୍ରଥମେ ନେଇ ଆସିବା ।

ବୃଦ୍ଧ ॥ ନାହିଁ ବାବା, ତମେ ଅନ୍ୟ ବାଟେ ଯାଅ । ତମେ କରିଥିବା ପାପକୁ ଶୁଙ୍ଘି ଶୁଙ୍ଘି ଯଦି ହାତୀଟା ଏଇଠିକି ଆସେ... !

(ବୃଦ୍ଧ ଜଣକ ଯିବାକୁ ବାହାରିଲେ)

ଯୁବକ ॥ ମଉସା...ଚାଲ ତମ ଝିଅଟାକୁ କଲେଜରୁ ନେଇ ଆସିବା—

ବୃଦ୍ଧ ॥ କାହିଁକି ବାପା, ମୋ' ଉପରେ ଏତେ ଦୟା କାହିଁକି ?

ଯୁବକ ॥ ଶୁଣନ୍ତୁ ମଉସା...ମୁଁ ଆଜିଠୁ ନିଜକୁ ଦେଶସେବାରେ ନିୟୋଜିତ କରିବି ବୋଲି ଭାବିଛି । ଚାକିରି-କରିବା କ'ଣ ନିହାତି ଦରକାର ? ଚାକିରି ନଥାଉ । ମୁଁ ଏଣିକି ଖାଲି ଦେଶ ସେବା କରିବି...ଅବଶ୍ୟ ହାତୀ ବିଧ୍ୱସ୍ତ ଅଞ୍ଚଳମାନଙ୍କୁ ସରକାର ରିଲିଫ୍ ପାର୍ଟି ପଠେଇବେ ! ତଥାପି ମୁଁ ଭାବୁଚି, ତା' ଆଗରୁ ଆମେ ଯାଇ...

ବୃଦ୍ଧ ॥ ବହୁତ ଧନ୍ୟବାଦ ବାପା; ରିଲିଫ୍ କାର୍ଯ୍ୟରେ ମୁଁ ତମଭଳି ଭେଣ୍ଡା-ମାନଙ୍କୁ ନେଇପାରୁନି...ମୁଁ ଚାଲିଲି...(ସେ ଚାଲିଗଲେ)

ଯୁବକ ॥ (ଏକାକୀ ଷ୍ଟେଜ୍ ଉପରେ) ଆଶ୍ଚର୍ଯ୍ୟ ! ସାହାଯ୍ୟ କରିବାକୁ ଚାହିଁଲେ ବି ଲୋକଟା ମତେ ବିଶ୍ୱାସ କରୁନି । ମୁଁ ଯଦି ନିଜକୁ ଧାର୍ମିକ ବୋଲି କହିଥାନ୍ତି ତା'ହେଲେ ମତେ ହୁଏତ ମୁଣ୍ଡରେ ବସେଇ ଥାଆନ୍ତା...ମୁଁ ଯଦି କିଛି କହି ନୀତି ଆଉ ମୂଲ୍ୟବୋଧର ମୁଖା ପିନ୍ଧିଥା'ନ୍ତି ତା'ହେଲେ ମତେ ବିଶ୍ୱାସ କରିଥାନ୍ତା...ସତ କଥାକୁ ସମସ୍ତଙ୍କର ଡର... ଦେଖାଯାଉ...ହାତୀ ବିଧ୍ୱସ୍ତ ଏଇ ରାଜଧାନୀରେ କେତେ ଦିନ ଏଇ ଫୁଟ୍‌ପାଥ୍ ମତେ ଆଶ୍ରୟ ଦେଇପାରୁଛି ! (ବସି ପଡ଼ିଲା ସେଇଠି) ଆଃ ! ଖୁଉଣ କ୍ଳାନ୍ତ । ଝଣ୍ଟେ ବଡ଼ି ଟାଣିଲେ ଟିକିଏ ଭଲ ଲାଗନ୍ତା । କିନ୍ତୁ ପାଖରେ ପଇସା ନାହିଁ । ବି.ଏ.ଟା ପାଶ କରି ନଥିଲେ ହୁଏତ ମୁଁ ଭିକ ମାଗି ପାରିଥାନ୍ତି । ସେଇଟା ବି ସମ୍ଭବ ନୁହେଁ । ଯୋଉଠିକି ଯିବ ସେଇଠି ଗୋଟାଏ ହାତୀ...ଯେମିତି ଗାଁରେ ଗୋଟାଏ ସାହୁକାର ଥିଲା...ହାତୀ ସାହୁକାର...

[ଯୁବକଟି ସେଇଠି ବସିଥାଏ । ପ୍ରବେଶ କଲେ ହାତୀ ସାହୁକାର]

ହାତୀ ସାହୁକାର ॥ କିରେ ରମିଆ, ଆଜି ଆଉ ବଲ ଆଡ଼େ ଯିବୁନି କିରେ ? ସକାଳୁଟାରୁ ଏମିତି ମୁହଁ ମାରି ବସିଚୁ କାହିଁକି ବା ? ଧିଅ ପା' ଅସୁଖ କିରେ ?

ରମିଆ ।। ଆଉ ବଲ୍ ଅଛୁ ମେ ସେଇଠିକି ଯିବ ! ସବୁ କଳପୋଡ଼ା ଅଙ୍ଗାର ହେଇଗଲଣି । ବହନ ଗଣ୍ଡାକ ଯାହା ହେଇଥିଲ ସବୁ ତ ଗଜା ମରୁଡ଼ିରେ ଗଲ ।

ସାହୁକାର ।। ଆରେ, ବର୍ଷା ନାହିଁ ଦ' ମାସେ ହେଲ, ଗଜା ମରୁଡ଼ି ହବନ ତ ଆଉ ହବ କ'ଣ ? ତା' ବୋଲି କ'ଣ ମୋ' ବହନର ଦୋଷ ?

ରମିଆ ।। ମୁଁ କ'ଣ ସେ କଥା କହିଲି ସାହୁକାରେ ?

ସାହୁକାର ।। ଆରେ ତୁ' ନ କହିଲେ ଆଉ କିଏ ତ କହୁଚ । ଶଳା ଏମାନଙ୍କର ବିପତ୍ତିବେଳେ ମୁଁ ସାହାଯ୍ୟ କଲି ଭଣ୍ଡାର ଘରୁ, ଗୌଣି ଗୌଣି ବହନ ମାପି ଦେଲି । ସେଥିପାଇଁ କୃତଜ୍ଞତା ଜଣେଇବେ କ'ଣ ଓଲଟି କହୁଛନ୍ତି ହାତୀ ସାହୁକାର ଫମା ଧାନ ଦେଇଛୁ ! ଶେଷକୁ ମୋ' ନାଁରେ 'ସମାଜ'ରେ ଲେଖି ଦେଇଦେଲେ । ଏଗୁଡ଼ାଙ୍କୁ ଧର୍ମ ସହିବ ?

ରମିଆ ।। ଧର୍ମ ଆଉ କୋଉଠି ଅଛୁ ସାହୁକାରେ ? ଧର୍ମ ଯଦି ଥାଆନ୍ତା ଶ୍ରାବଣ ମାସରେ ଆମେ ଆକାଶକୁ ଅନେଇ ବସିଥା'ନ୍ତୁ ?

ସାହୁକାର ।। କେତେ କହିଲି ଏ ଗାଁ । ବାଲାଙ୍କୁ ହର୍ତ୍ତି ନା ଆଉ ଯୋଉ ବାବାଜୀ ଅସିଛନ୍ତି ତାଙ୍କୁ ଧରି ଗୋଟେ ଯଜ୍ଞ କର୍‌ଅ—ବର୍ଷା ହେବ । ଏମାନେ କ'ଣ ସେ କଥା ଶୁଣିବେ ? ସଂଧ୍ୟା ହେଇଗଲେ ଗଞ୍ଜେଇ ଗୁଡ଼େ ଖାଇ ଚୁଙ୍ଗାରେ କାଣ୍ଡିନ କଚ କଚ, ଭଢ ଯୋଉଠୁ ବାରଟା ବାଜିବ—ପେଟରେ ଓଦାକନା ପକେଇ ଶୋଇ ପଡ଼ିବେ !

ରମିଆ ।। ସାତ ଦିନ ଅଖଣ୍ଡ ଯଜ୍ଞ କରିବା ପାଇଁ କେତେକ ଟଙ୍କା ଦରକାର ପାଖରେ ଥିଲେ ତ ? ଖାଲି ଘିଅ ପର ସାତ ନଉଦ ଲାଗିବ ସାଉକାରେ !

ସାହୁକାର ।। ଆରେ ଗାଁ ବାଲା କେତେକ ଦେବେ, ଦେବେ । ବଳକା ପଇସାଟା ପଞ୍ଚେଇତରୁ ଦବା ! ନହେଲେ ସୋସାଇଟି ଦବ—

ରମିଆ ।। ସେମାନେ କ'ଣ ଏଇ ଯଜ୍ଞ ପଇସା ଦେଇଥାନ୍ତେ ?

ସାହୁକାର ।। ଦେଇଥାନ୍ତେ କି ନ ଦେଇଥାନ୍ତେ ତୁ' କେମିତି ଜାଣିଲୁ ? ମନକୁ ମନ ? ଅରେ ତମ ଦେଇ ଆଜି ପର୍ଯ୍ୟନ୍ତ କିଛୁ ଗୋଟେ ଭଲକାମ ହେଲଣି ? ବଞ୍ଚିବା ପାଇଁ ଖଟଣୀ ଦରକାର—

ପରିଶ୍ରମ ଦରକାର ! ବାପା ତ ମଲା, ତୁ ତ ଗୋଟେ ବାହାହେଇ କନିଆଁଟେ ଆଣିଲୁ । ମୁଣ୍ଡରେ ଗାମୁଛାଟେ ବାନ୍ଧି ଦାଣ୍ଡ ପିଣ୍ଡାରେ ବସି ରହିଲେ କ'ଣ ହେବ ? ଗୋଟାଏ କିଛି ଚିନ୍ତା କର ।

ରାମିଆ ।। ବଳଦ ହଳକ ତ ବିକିଲି । ସେଇ ପଇସାରେ ବାହାନ କଣିକି ଯେ ତା'ବ ଗଜା ମରୁଡ଼ିରେ ଗଲା । ଆଉ କ'ଣ ସମ୍ବଳ ଅଛି ସାଉକାରେ ? ଆଉ କରିବା ପାଇଁ କ'ଣ ଉପାୟ ଅଛି ?

ସାହୁକାର ।। ଉପାୟ କରିବାକୁ ପଡ଼ିବ ! ତମ ବାପ ଅକାଏ ସେମିତି କରୁଥିବେ ନା' ! ଏକେଲା ଥାଆନ୍ତୁ କ ଅଲଗା କଥା । ଘରକୁ ଧରା ଭୁଆସୁଣୀ ମାଇପିଟେ ଆଣିଲୁ ! କ'ଣ, ପଇସା ଦରକାର ? କରେ କହୁନୁ ?

ରାମିଆ ।। ଗତଥର ତ ପଇସା ଆଣିଥିଲି ଯେ ବଳଦ ହଳକ ବିକି ମଧ୍ୟ ଶୁଝି ହେଲାନି । ଆହୁରି କେତେ ବାକି ଅଛି ।

ସାହୁକାର ।। ଥାଉ । ଏ ବର୍ଷ ସିନା ଫସଲ ହେଲାନି, ଆର ବର୍ଷ ତ ହେବ ! ଏମିତି ମୁହଁ ମାରି ବସିଲେ କ'ଣ ହେବ ? ଆଚ୍ଛା ମୋ'ଠୁ ନ ନେଲୁ ନାହିଁ । ଆମ କୋପୋରେଟ୍ ସୋସାଇଟିରୁ ନଉନୁ ?

ରାମିଆ ।। ସେମାନେ କ'ଣ ମତେ ଦେବେ ?

ସାହୁକାର ।। ଅଲବତ୍ ଦେବେ । ଦେବା ପାଇଁ ସେମାନେ ବସିଛନ୍ତି । ମୁଁ ତ ସେଇଠି ସେକ୍ରେଟେରୀ । ଚାଲ୍, ଜମି ଆଉ ଘର ଖଣ୍ଡିକ ଲେଖେଇ ଦେଇ ପଇସା ଆଣିବୁ ଚାଲ । ଏଇ ପାଳି ହାଟରୁ ଭଲ ବଳଦ ହଲେ କିଣ । କରେ ଆମେ କିଏ ଦବା ଲୋକ ? ଭଗବାନ ଅଛନ୍ତି ! ଦେ' ପାଣି ଗିଲାସେ ଆଣ ।

ରାମିଆ ।। ଲକ୍ଷ୍ମୀ...ଲକ୍ଷ୍ମୀ...ଚିକେ ପକେଇ ଗିଲାସେ ପାଣି ଆଣେ...ହାଣ୍ଡି ହାହୁକାରେ ଆସିଛନ୍ତି ।

ସାହୁକାର ।। ସେମିତି ହତାଶ ହେବା ପାଇଁ କିଛି ନାହିଁ ମ ରାମିଆ । ଜମି ଆଉ ଘର ଖଣ୍ଡିକ ଲେଖେଇଦେଲେ କାଲି ସକାଳୁ ବଳଦ ଆସିଯିବ । ହ ଅସରା ବର୍ଷା ହେଲେ ପୁଣି ଫସଲ କ'ଣ, ସୁନା ଫଳିବ ସେଇଠି !

(ଲକ୍ଷ୍ମୀ ପଣା ନେଇ ଆସିଛୁ)

ଦେ ମା'...ଆଣେ ।

ଲକ୍ଷ୍ମୀ ॥ ଜୁଆର ସାହୁକାରେ !

ହାଣ୍ଡି ସାହୁକାର ॥ ଜୁହାର, ଜୁହାର । ତୋ' ବପାକୁ ବୁଝୋଉଥିଲ, ବୁଝିଁଲୁ ? (ପଣା ପିଇ) ଏଇଠି ମନ ମାରି ବସିଲେ ତ ଆଉ ଅବସ୍ଥା ସୁଧୁରି ଯିବନି...ଲୋକେ କେତେ ପ୍ରକାର ରୋଜଗାର କରି ଘର ଚଳାଉଛନ୍ତି । ଭରଣ ଦଶ ହଜାର ଦେଇ କୋଳିଆରି ବାଲା ଏ ବର୍ଷ ଜମି କିଣିଛନ୍ତି । ହାଇରେ ଛୁ'ଟା ଗଜା ଭେଣ୍ଡି ଆଟେ... ଲକ୍ଷ୍ମୀ ପରି ଏ ସ୍ତ୍ରୀ...ତୋର ପୁଣି କି ·ଅଡୁବିଧା ? କଲେ ଲକ୍ଷ୍ମୀ, ବୁଝୋଉନୁ ? ଅଲୋ, ଆଜି ପିନା ଦ'ଜଣ ହୋଇଚ, କାଲି ପୁଣି ଦୁଇରୁ ତିନି, ତିନିରୁ ଚାରି ହବ କି ନାହିଁ ?

(ଲକ୍ଷ୍ମୀ ଚାଲିଗଲା ଲାଜରେ)

ହଉ, ମୁଁ ଚାଲିଲି ରାମିଆ । ମୁଁ କହିବା କଥା କହିଦେଲି । ତତେ ନେଇତ ଆଉ ଜବରଦସ୍ତି ଟିପଚିହ୍ନଟା ନେଇ ଯାଇ ପାରିବିନି ! ଦେଖେ—ତୋ' ଇଚ୍ଛା !

ରାମିଆ ॥ ମୁଁ ତା'ହେଲେ କାଲି ଯିବି ସାହୁକାରେ ! (ସାହୁକାରେ ଚାଲିଗଲା ପରେ) କ'ଣ ରୋଷେଇବାସ କିଛି ହେଲା ?

ଲକ୍ଷ୍ମୀ ॥ ଆଉ ରୋଷେଇ ହବ ? ହାଣ୍ଡି ସାହୁକାର କି ଚାଉଳ ଦେଇଛୁ କେଜାଣି ଖାଲି ଗନ୍ଧ ଛୁଟୁଚି । ପାଣିରେ ଭିଜେଇ ଚାଉଳ ଦେଇଛୁ—ଭାତ ତ ନୁହଁ—ଖାଲି ଅଠା ଅଠା ଲାଗୁଛୁ—

ରାମିଆ ॥ ଖାଇବା ପାଇଁ ଇଚ୍ଛା ହଉନି ମୋର !

ଲକ୍ଷ୍ମୀ ॥ ଏମିତି ନ ଖାଇ ନ ପିଇ ବସି ରହିଲେ କ'ଣ ହବ ? କାଲି ଯାଅ ତା' ପାଖକୁ । ଟଙ୍କା ପଇସା ଦେବି ବୋଲି କହୁଛନ୍ତି ଆଣ । ଅବସ୍ଥା ସୁଧୁରିଗଲେ ଦେଇ ଦେବାନି ? ଆସ ।

(ଉଭୟେ ଚାଲିଗଲା ପରେ ଆସିଲେ ହାଣ୍ଡି ସାହୁକାର)

ସାହୁକାର ॥ ହରି ହରି । ଯେତେ ଚେଷ୍ଟା କଲେ ବି ଅଧଘଣ୍ଟାଏ ପୂଜାଘରେ ବସି ହଉନି କି ମନ୍ଦିରରେ ଘଣ୍ଟେ ଦେଢ଼ଘଣ୍ଟା ମନ ପୂରେଇ ଠାକୁରଙ୍କୁ ଡାକି ହଉନି । ଏତେ ଲୋକଙ୍କର ଏତେ କଥା

ବୁଝିବି କେମିତ ? ଆଜି ପୁଣି ଦୁଇଶହ ଦାଦନ କୁଲି କାଶ୍ମୀର ଯିବେ । ଜରେ, ସମସ୍ତେ ସବୁକଥା ଆସି ମତେ କହି ଦଉଛ ଯେ ବର୍ତ୍ତମାନ ଦୁଇଶହ ଲୋକ ଏ ଅଞ୍ଚଳରେ ଆସିବେ କୁଆଡ଼ୁ ? ଓହୋ ମୁଣ୍ଡ ପିଚ୍ଛୁ ଦୁଇଶ' କର କମିଶନ ମିଳିବ ! କ'ଣ ହବ ସେ ପଇସାରୁ ? ଶଳା ଆଜିକାଲି ମାଙ୍କଡ଼, ଭାଲୁ ମଧ୍ୟ ପଇସା ଅର୍ଜିଲେଣି ! ହଇରେ ଏ ଅର୍ଜୁନ ! ରତିଆ ଆସିଲା ?

ରତିଆ ॥ ମତେ ଡକେଇଥିଲ ସାହୁକାରେ ?

ସାହୁକାର ॥ ନ ଡକେଇ ଆଉ ଉପାୟ ଅଛି ? ବାପ ରତିଆ, ପଇସାଟା ତ ଠିକ୍ ଗଣିକି ନେଲୁ ସେଦିନ । ସୁଧ ପଇସା ମିଶି ଏଇଲେ ସାତ ହଜାର ହେଲା । ସରକାର କହୁଛି କାଲି ନ ଦେଲେ ଜମି ଘର କୋରଖ ହବ । ଏବେ ହବ କମିତ ?

ରତିଆ ॥ ମୁଁ ମରିଯିବି ସାହୁକାରେ ! ଏତେ ପଇସା ମୁଁ ବର୍ତ୍ତମାନ ଆଣିବି କୋଉଠୁ ?

ସାହୁକାର ॥ ହଁ ।......ହଁ ।......ଏମିତ ତର୍ଣ୍ଣି ଶୁଖିଯାଉଛୁ କାହିଁକି ? ରହ । ଧୈର୍ଯ୍ୟ ଧର । ଆମେ ତମ ରୋଜଗାର ବାଟ ବି ଦେଖେଇଦବୁ । ଲୋକେ ମାଟି ହାଣିବାକୁ କାହିଁ କେତେ ବାଟ ଯାଉଛନ୍ତି ! ଫେରିଲାବେଳକୁ ହାଣ୍ଡି ହାଣ୍ଡି ପଇସା ଆଣି ଏଇଠି କୋଠା ବାଡ଼େଇଲେଣି ! ଯାଉନୁ ?

ରତିଆ ॥ ମୁଁ ତ ମୁରୁଖ ଲୋକ ବାବୁ... ଏତେ ବାଟ...କୁଆଡ଼େ ଯିବାକୁ ହବ ?

ସାହୁକାର ॥ ଆରେ ଅଦା ବେପାରୀ ତୁ'......ଜାହାଜ ମୂଲେଇବା କ'ଣ ଦରକାର ତୋର ? ଏଁ ? ଆଜି ଯଦି ବାହାରିବୁ ବାହାର— ଏଇ କୋଡ଼ିଏଟା ଟଙ୍କା ଘରେ ଦେଇ ଦେ'...ହେଲେ, ଷ୍ଟେସନରେ ଛାଡ଼ି ଦେଇ ଆସିବି...ତୁ' ସେଇଠି ପହଞ୍ଚିଲେ ଖାଇବା, ପିଇବା, ଯିବା ଆସିବା ଖର୍ଚ୍ଚ ସବୁ ସିଏ ଦେବ......ତା' ଛଡ଼ା ଦିନକୁ କୋଡ଼ିଏ ଟଙ୍କା ମଜୁରି ପାଇବୁ । କ'ଣ ରାଜି ?

ରତିଆ ॥ ଘରେ ସ୍ତ୍ରୀଟା ଏକେଲା...

ସାହୁକାର ।। କ'ଣ ତୋର ଏକା ଗୋଟେ ସ୍ତ୍ରୀ ଅଛ ନା ସମସ୍ତେ ତାହା ହେଇଛନ୍ତି ବା ? ସୁବିଧା ଅସୁବିଧାରେ କ'ଣ ଆମେ ନାହୁଁ ? ହଇରେ ?

ଗୁମିଆ ।। ହଉ ସାହୁକାରେ, ତା' ହେଲେ ଯିବା...

ସାହୁକାର ।। ସୁନା ପୁଅ, ଏଥର ବାଟକୁ ଆଇଲୁ...ଚାଲ । ମୁଁ ସବୁ ବନ୍ଦୋବସ୍ତ କରିଦଉଛି । ଚାଲ୍ । ଅରେ କୋପରେଟ୍ ଋଣ ଶୁଝି ଏକଦମ୍ ମାଲେମାଲ୍ ହେଇଯିବୁ ଗୁମିଆ...ତୋ' ଭାଗ୍ୟ ଖୋଲିଗଲା ବୋଲି ଜାଣ...

(ସାହୁକାର ଗୁମିଆକୁ ନେଇ ଚାଲିଗଲେ । ତା'ପରେ ମଞ୍ଚ ଉପରେ ଦେଖାଗଲା ଲକ୍ଷ୍ମୀକୁ । ଉଦାସ ମୁହଁ)

ଲକ୍ଷ୍ମୀ ।। କୁଆଡ଼େ ଗଲେ ଯେ ଦେଢ଼ ବର୍ଷ ହେଲା ଚିଠି ନାହିଁ ପତ୍ର ନାହିଁ... କିଏ କେତେ ପ୍ରକାର କଥା କହୁଛନ୍ତି । ମୁଁ କେମିତି ଚଳିବ ବୋଲି ଭାବିଲେ କେଜାଣି...ଲୋଟଣିଦିନ ହେଲା ଖାଇବା ପାଇଁ କିଛି ନାହିଁ । ହାଡ଼ ସାହୁକାରଙ୍କୁ ଖବର ଦେଲି ଯେ ଏ ପର୍ଯ୍ୟନ୍ତ ତାଙ୍କର ଦେଖାନାହିଁ ।

(ବାହାରେ ଗଲା ଖଙ୍କାର ଶବ୍ଦ ଶୁଣାଗଲା)

[ପ୍ରବେଶ କଲେ ସାହୁକାରେ ମଦ୍ୟପାନ କରିଛନ୍ତି—]

ସାହୁକାର ।। ଆଲୋ ଲକ୍ଷିମି ! ଲକ୍ଷିମି ଅଛୁ କଲେ ?

ଲକ୍ଷ୍ମୀ ।। ତମେ ସାହୁକାରେ କଜେ ଆଇଲ ? ଅର୍ଜୁନ ହାତରେ ପଠେଇ ଦେଲନି ?

ସାହୁକାର ।। ତୋ' ଦାୟିତ୍ୱ ନେଇଛି ଯେତେବେଳେ ମତେ କଜେ ଆସିବାକୁ ପଡ଼ିବ । ହଇଲୋ ଲକ୍ଷିମି...ମୁଁ କ'ଣ ବୁଢ଼ା ହେଇଗଲିଣି ?

ଲକ୍ଷ୍ମୀ ।। ତମ ଗୋଡ଼ ଦ'ଟା ଏମିତି ଟଳୁଚ କାହିଁକି ?

ସାହୁକାର ।। ଏଁ ଗୋଡ଼ଟା ଟଳୁଚ ? ହେ...ହେ...ହେ...ହଇଲୋ ତତେ ଦେଖି ମୋର ମନଟା ଟଳମଳ ହେଲଣି । ଆଉ ଗୋଡ଼ କଥା ପଚାରୁଚ କିଏ ? ଆଲୋ ଖାଲି କ'ଣ ଗୋଡ଼ ? ମୋର ସବୁ ଟଳମଳ ହଉଛି ।

ଲକ୍ଷ୍ମୀ ॥ ବଡ ସାଅନ୍ତେ । ପଣା ଆଣିଦେବ ?

ସାହୁକାର ॥ ଆଲେ ପଣା ପିଇ କ'ଣ ଶୋଷ ମରିବ ? ଶଳା ଗ୍ରମିଆ ପଗ୍ଳ ତତେ ମୋ' ଜିମାରେ ଛାଡ଼ିଦେଇ ଯାଇଛି...କହୁଛି...ଲଖିମିର ସବୁ କଥା ବୁଝିବ...

ଲକ୍ଷ୍ମୀ ॥ କୁଅଡ଼େ ଯାଇଛନ୍ତି ଯେ ଚଠି ନାହିଁକି ଖବର ନାହିଁ...ମୋ' ମନ ବଡ଼ ବ୍ୟସ୍ତ ହେଲଣି ସାହୁକାରେ ! ତମକୁ ଖବର ପଠେଇଛନ୍ତି ?

ସାହୁକାର ॥ ଅଉ ଖବର ପଠେଇବ ! ଶଳା ସେଇଠି ଶୀତ କାକରରେ କୋଉଠି ମରିଗଲ ବୋଧହୁଏ ଟଙ୍କା ବି ପଠେଇନି । କୃଉଲ ପଠେଇଥିଲ ପାଇଲୁ ? ଶାଢ଼ି ଖଣ୍ଡେ ପଠେଇଥିଲ । ପିନ୍ଧିଛୁ ନା ନାହିଁ ବା ? ମୋ' ଅଖିକୁ କିଛି ଦେଖାଯାଉନି ।

ଲକ୍ଷ୍ମୀ ॥ ଏଁ ! ଏ କ'ଣ କହୁଚ ସାଉକାରେ ? ସତରେ ତାଙ୍କର କ'ଣ ହେଇଗଲ ?

ସାହୁକାର ॥ ଯାହା ହେଇଥିବ ହେଇଥାଉ ଶଳା!...ନୂଆ ବାହାହେଇ ଯୁବତୀ ମାଇପକୁ ଛାଡ଼ିଦେଇ ଶଳା କାଶ୍ମୀର ଯାଇଛି...ତୋ' କଥା କିଏ ବୁଝିବ କହିଲୁ । ସେଇଥି ପାଇଁ ଭବିଲ ଆଜି ଟିକିଏ ତୋ'କଥା ବୁଝି ଆସିବି । ଆଲେ ଏମିତ ଦୂରେଇ ଦୂରେଇ ଠିଆହେଲୁ କାହିଁକି ବା ? ପାଖକୁ ଆସୁନୁ ?

ଲକ୍ଷ୍ମୀ ॥ ଇସ୍ ତମ ମୁହଁରୁ ଖାଲି ଗନ୍ଧ ବାହାରୁଛି ।

ସାହୁକାର ॥ ମୋ' ଧିଅଟା ଥଣ୍ଡା ଲଗିଲ ତ...ଟିକିଏ ଗରମ କରିଦେଇଛି । ଦେଖୁନୁ ମୋ' ଧିଅଟା କେମିତି ତେଲ କଡ଼େଇ ପରି ଫୁଟୁଛି । ତୋ' ଧିଅ ତ ଏମିତ ଗରମ ହଉଥିବ । ଏ ଶଳା ଗ୍ରମିଆ କ'ଣ ସେ କଥା ବୁଝୁଛି...ଆଁ'...ପାଖକୁ...ଆଁ'...

ଲକ୍ଷ୍ମୀ ॥ ସାହୁକାରେ ! ତମେ ମୋ' ବାପ ସମାନ ।

ସାହୁକାର ॥ ଆଲେ ଦିନବେଳେ ସମସ୍ତେ ଜାଣିବା ପାଇଁ ସିନା ବାପ... ରାତରେ ବାପ ହେଲେ ତ ଯାଟା ହେଇଯିବ...ଆଁ'...ଆଜି ଆଉ ସମ୍ଭାଳି ହେଲନି...ତୋ' ଦୁଃଖ ଦେଖି ମୋ' ଦୁଃଖଟା ଖାଲି ଟଲମଲ ହେଲ ।

ଲକ୍ଷ୍ମୀ ॥ ସାହୁକାରେ !

ସାହୁକାର ॥ ପଛକୁ ପଛକୁ କୁଆଡ଼େ ଯାଉଛୁ ବା......ଇଆଡ଼େ ଆସୁନୁ ?
ଆଁ...

ଲକ୍ଷ୍ମୀ ॥ ସାହୁକାରେ ତମ ଗୋଡ଼ ତଳେ ପଡ଼ୁଛି...ଆମେ ଗରିବ ଲୋକ । ମାନ ଇଜ୍ଜତ ଗଲେ ଆମେ ତାକୁ ଆଉ ଯୋଡ଼େଇ ରଖି ପାରିବୁନି । ତମେମାନେ ହିଁ ଶେଷକୁ ଆମକୁ ଦୋଷୀ ବୋଲି କହିବ ସାହୁକାରେ—ମୋ' ଜୀବନ ନଷ୍ଟ ହେଇଯିବ...

ସାହୁକାର ॥ ଆଲୋ କଏ ଜାଣି ପାରିବନି ବା...ବନିଆ ବି ଜାଣିପାରିବନି ..
ଆଁ'......ଥରେ ଦିଅଟାକୁ ଗରମ କରିଛୁ ହେଲେ ତେବେ ତାକୁ କୌଣସି ମତେ ଥଣ୍ଡା କରିବାକୁ ପଡ଼ିବ ହିଁ ପଡ଼ିବ...ଲଖିମି...ଏ ଲଖିମି...

ଲକ୍ଷ୍ମୀ ॥ । ସାହୁକାରେ !

(ସାହୁକାରେ ଲକ୍ଷ୍ମୀ ଉପରେ ଧସେଇ ପଡ଼ିଲେ ଓ ଲକ୍ଷ୍ମୀକୁ ଚିରପଟ ଅନ୍ଧାର ଢାଙ୍କିଲା ।

ତା'ପରେ ଦିଶିଲା ଯୁବକଟି ମଞ୍ଚ ଉପରେ ଠିଆ ହେଇଛି)

ଯୁବକ ॥ ମୁଁ ସେଇ ବନିଆ ।
ମୁଁ ସେଇ ବନିଆ ନ ହେଇପାରେ ।
ଦାଦନ କୁଲି ବନିଆ ଗାମୁଛା ପିନ୍ଧୁଥିଲା, ମୁଁ ପେଣ୍ଟ୍ ପିନ୍ଧୁଛି ।
ସେ କାଶ୍ମୀର ଯାଇଥିଲା, ମୁଁ ରାଜଧାନୀ କୁ ଆସିଛି ।
ତା' ଲକ୍ଷ୍ମୀ ହାତୀ ସାହୁକାରର ଶୁଣ୍ଢରେ ପେଷି ହେଇଯାଇଥିଲା ।
ଆଉ ମୋ' ଲକ୍ଷ୍ମୀ ?

ଆଃ ! ମୋ ମୁଣ୍ଡଟା କ'ଣ ହେଇଯାଉଛି । ଏତେ ବଡ଼ ରାଜଧାନୀରେ ପାଣି ଟିକିଏ ଦେବା ପାଇଁ ବି କେହି କୋଉଠି ନାହିଁ । ଯିଏ ଯାହା ବାଟରେ... ଏ ଘର ଲୋକ ତା' ପଡ଼ିଶା ଘରକୁ ଚିହ୍ନି ନାହିଁ...ମୁଁ ଖାଇଛି କି ନାହିଁ ଖବର ରଖିବା ପାଇଁ କେହି ନାହିଁ...ଅଥଚ ମୁଁ ଏଇଠି ପାଞ୍ଚବର୍ଷ ହେଲା...

[ଦୂରରୁ ପାଖକୁ ମାଡ଼ି ଆସିଲା "ହାତୀ ଉପଦ୍ରବ"/"ହାତୀ ଉପଦ୍ରବ" ଶବ୍ଦ । ପୁଣି ସେଇ କୋଳାହଳ/ପାଟିତୁଣ୍ଡ— ଦୌଡ଼ାଦୌଡ଼ି । ତା'ର ଭିତରେ ଯୁବକଟି ହତାଶ ହୋଇ ବସିଥାଏ । ଗୋଟିଏ ସମ୍ବାଦ ପତ୍ର ବିକୁଥିବା ଟୋକା ଟୁଆ ସେଇବାଟେ ଡାକ ଡାକ ଗଲା]

ହକର୍ ।। ରାଜଧାନୀରେ ହାତୀ ଉପଦ୍ରବ ! ମହାନଦୀ ବନ୍ୟାରେ ଗୋଟିଏ ଦନ୍ତୁଆ ହାତୀ ଭାସି ଆସି ଜଣେ ସାଇକେଲ୍ ଚଢ଼ାଳୀକୁ ହତ୍ୟା କରିଛି । ପୋଲିସ୍ ସାତ ହଜାର ଦୁଇଶହ ବସ୍ତାଳିଶିଟି ଗୁଳି ଫୁଟାଇବା ସତ୍ତ୍ୱେ ହାତୀଟି ମରିନାହିଁ । ରାଜଧାନୀର ବଜାର, ହାଟ ପ୍ରାୟ ବନ୍ଦ ହୋଇଗଲାଣି । ଦେଶରେ ଘୋର ବିପତ୍ତି ପଡ଼ିଥିବା-ବେଳେ ହାତୀଟିକୁ ଜୀବିତ କିମ୍ବା ମୃତ ଅବସ୍ଥାରେ ଧରି ପାରିଲେ ସରକାର ପାଞ୍ଚ ଲକ୍ଷ ଟଙ୍କା ପୁରସ୍କାର ଦେବେ ବୋଲି ଘୋଷଣା କରିଛନ୍ତି । ସମାଜ, ପ୍ରଜାତନ୍ତ୍ର, ଧନଲିପ୍ସି, ଧରିତ୍ରୀ !!

(ଯୁବକକୁ ଦେଖି)

ଅଙ୍କଲ୍ ! କ'ଣ ଆଜି ଶୋଇ ପଡ଼ିଲେଣି ଏତିକିବେଳୁ ?

ଯୁବକ ।। ଆରେ ନାହିଁ ଯାର୍ ! ଖୁବ୍ ହାଲିଆ ହୋଇ ଯାଇଥିଲି, ଆଉ ଭୋକ ବି କରୁଥିଲା । ଏମିତିକା ପାଖରେ ଖର୍ଚ୍ଚି ଆ ବଡ଼ ଝଣ୍ଟେ ବି ନଥିଲା ।

ହକର୍ ।। ଟିକିଏ ଅପେକ୍ଷା କରିବେ କି ଅଙ୍କଲ୍ ? ମୁଁ ମିନିଟ୍‌କ ଭିତରେ ଆସୁଛି ।

ଯୁବକ ।। **O.K**, ଜଲ୍‌ଦି ଫେରିବ କିନ୍ତୁ । କୋଉଥିରେ କୋଉ **advertisement** ବାହାରିଛି ଟିକିଏ ଦେଖିନେବା । ପୁରୁଣା ଅଭ୍ୟାସଟା ରହିଯାଇଛି ଯେତେବେଳେ !

ହକର୍ ।। ତମେ 'ସମାଜ'ଟା ଦେଖୁଥାଅ ଅଙ୍କଲ୍ !

(ବାହାରକୁ ଯାଉଛି । ଯୁବକ 'ସମାଜ' ପଢ଼ୁଛି)

ଯୁବକର ସ୍ୱର ।। **1789** ମସିହାରେ ଏପରି ଗୋଟାଏ ହାତୀ ପଶିଯାଇଥିଲା । ଫ୍ରାନ୍‌ସ୍ ଭିତରେ । ତା' ଆଗରୁ **1776** ମସିହାରେ ଆମେରିକା

ଭିତରକୁ...ବ୍ରିଟିସ୍ ନିକୋଲାସ୍ଙ୍କ ବିରୁଦ୍ଧରେ 1917 ମସିହା ନଭେମ୍ବର ୱ' ତାରିଖରେ ଘଟିଥିଲା ରଷିଆ ଭିତରେ... ଚୀନ୍‌ରେ ଏମିତି ଗୋଟାଏ ହାଟ୍ ଦେଖାଦେଇଥିଲା 1911ର ଅକ୍ଟୋବର ମାସରେ...ଏଣୁ ଅନୁମାନ କରାଯାଉଛି ଯେ ଏହା ଏକ ଐତିହାସିକ ହାଟ...

(ହକର୍ ଫେରି ଆସିଛି)

ହକର୍ ॥ ଏଇ ନିଅ ଅଂକଲ୍ ! ତମର ବଡ଼ି ।

ଯୁବକ ॥ ବାଃ ୟାର୍ ! ୟୁଗ୍ ୟୁଗ୍ ଜୀୟୋ ।

ହକର୍ ॥ ଆଜି ଇଏ ହେଲା ଦ'ଟା ଅଣ୍ଡା ।

ଯୁବକ ॥ ଆରେ ଏଗୁଡ଼ା କାହିଁକି ଆଣିଲୁ ? ତୋର ଖାଇ ଖାଲି ବୁହା ଧନ...

ହକର୍ ॥ ସେଇଥି ପାଇଁ ତ କାମରେ ଲାଗୁଛି !

ଯୁବକ ॥ ଦେଖ ବାବା, ତୋର ମାଆ ଯେତେବେଳେ ହିସାବ ମାଗିବେ କ'ଣ କହିବୁ ତାଙ୍କୁ ? ମିଛ କହିବୁଟି ?

ହକର୍ ॥ ମିଛ କାହିଁକି କହିବି ଅଙ୍କଲ୍ ? ମା'ଙ୍କୁ ତ ମୁଁ ତମ କଥା କହିଛି !

ଯୁବକ ॥ ସତେ ନା କ'ଣ ? ସେ କ'ଣ କହିଲେ ?

ହକର୍ ॥ ମା' କହିଲେ ହାଟ ଉପଦ୍ରୁତ ଲୋକମାନଙ୍କ ପ୍ରତି ତାଙ୍କର ଗଭୀର ଭକ୍ତି ।

ଯୁବକ ॥ ମୋର ତାଙ୍କ ପାଖରେ କୃତଜ୍ଞ ରହିବା ଉଚିତ ।

ହକର୍ ॥ ମା'ଙ୍କୁ ମଧ୍ୟ କୁଆଡ଼େ ହାଟଟା ହଇରାଣ କରିଚି ।

ଯୁବକ ॥ ଆଚ୍ଛା ! ମୁଁ ଯାହା ଦେଖିଲିଣି, ଇଏ ତ ସାଧାରଣ ହାଟ ନୁହେଁ !

ହକର୍ ॥ ଯା'ହଉ ; ଏ ହାଟ ନ ଆସେ କି ତମ ସହ ମୋର ସାକ୍ଷାତ ନ ହୁଏ ! (Pause) ମୁଁ, ତା'ହେଲେ ଆସୁଚି ଅଙ୍କଲ୍...ମା' ପୁଣି ମତେ ଜଗି ବସିଥିବେ ! ରାତି ଗୁଡ଼େ ହେଲାଣି ତ... !

(ହକର୍ ଚାଲିଯିବା ପୂର୍ବରୁ)

ଯୁବକ ॥ **Okay ! Good Night !**

ହକର୍ ॥ Good Night Uncle !

(ଯୁବକଟି ଚାଲିଗଲା ମଞ୍ଚ ବାହାରକୁ)

(ଯୁବକଟି ଚାଲିଗଲା ପରେ ହକର୍ ପିଲାଟି ପଛକୁ ଫେରିଲା ବେଳକୁ ଠିଆ ହୋଇଛନ୍ତି 'ଲକ୍ଷ୍ମୀ')

ଲକ୍ଷ୍ମୀ ॥ ଆରେ ! କାଳିଆ କାହ୍ନୁଟା ମୋର ! (ଗେଲରେ ତାକୁ କୁଣ୍ଢେଇ ପକେଇଲେ)

କାହ୍ନୁ ॥ ମା' ଆଜି ପୁଣି ଅଙ୍କଲ୍‌ଙ୍କୁ ଦେଖିଲି !

ଲକ୍ଷ୍ମୀ ॥ ଖାଇଥିଲେ କି ନାହିଁ ?

କାହ୍ନୁ ॥ ନାହିଁମ ! ଖାଇଥିଲେ କୋଉଠୁ ? ଷ୍ଟେଶନରେ ତ ଶୋଇ ପଡ଼ିଥିଲେ ସେଇ ବେଞ୍ଚ୍‌ଟା ଉପରେ । ମୁଁ ଯାଇ ଉଠେଇଲି । ଅଣ୍ଡା ଆଣି ଦେଲି—ବଡ଼ି ଆଣିଦେଲି ।

ଲକ୍ଷ୍ମୀ ॥ ବଚ୍ଚୁ ! ଆଚ୍ଛା କାହ୍ନୁ, ତାଙ୍କୁ ଦିନେ ନେଇ ଆସୁନୁ ଏଠିକି ?

କାହ୍ନୁ ॥ ସେ କ'ଣ ଆସିବେ ? ତାଙ୍କ ଫୁଟ୍‌ପାଥ୍ ଭଲ ତ ସିଏ ଭଲ । ଯୋଉଠି ଯାହା ମିଳିଲା ଖାଇଦେବେ । ଶୋଇପଡ଼ିବେ କୋଉ ଚା' ଦୋକାନ୍ ବେଞ୍ଚ ଉପରେ...ପାର୍କ ଭିତରେ ନହେଲେ କାହା ବାରଣ୍ଡାରେ । ବେଳେ ବେଳେ ରହି ଯାଆନ୍ତି Law College ହଷ୍ଟେଲ୍ ଭିତରେ...

ଲକ୍ଷ୍ମୀ ॥ ସେ ହାଙ୍ଗାଟାର କ'ଣ ହେଲା ?

କାହ୍ନୁ ॥ ସେମିତ ବୁଲୁଚ ରାଜଧାନୀ ଭିତରେ । ଆଗରୁ ଯେମିତ ବେପାର ହଉଥିଲା, ଆଜିକାଲି ଆଉ ସେମିତ ହଉନି । ଲୋକ ତ ନାହାନ୍ତି ରାସ୍ତାରେ ଆଉ ଖବର କାଗଜ କିଣିବ କିଏ ?

ଲକ୍ଷ୍ମୀ ॥ (ହାତର ଶଙ୍ଖ ଚୁଡ଼ି ହୋଇ ପାଖେଇ ଆସୁଛନ୍ତି) ହେଇ ଏପଟକୁ ଆଇଲଣି ବୋଧେ !

କାହ୍ନୁ ॥ ଏପଟକୁ ? ଆମ କୁଡ଼ିଆଟାକୁ ବି ଭାଙ୍ଗି ଦେବ ?

ଲକ୍ଷ୍ମୀ ॥ ଆରେ, ତୁ ତାକୁ ଡରୁଚୁ କାଳିଆ ? କିଛି ପରବାୟ ନାହିଁ । ସିଏ ଖାଲି ଏଇଠିକି ଆସୁ । ଗୋଟେ ଜାବୁଡ଼ା ଦେବି ଯେ ତା'ର ହୁଲିଆ

ଟାଇଟ୍ ହେଇଯିବ ! ଆରେ ଏମିତ କେତେ ହାତୀ ଦେଖିଲିଣି—ନା—ମାଗଣାକୁ ଗପ କରୁଛୁ ଟ୍ରେହନ ବଜାରରେ ? ହଇରେ ନା ହେଲେ ମତେ ଗଢେଇ ଦିଅନ୍ତେ ଏଇ ମାଳି ସାଇ ଭିତରେ ? ଏଇଠି ପରା ରେଳ୍ ହାତୀ ଖେଦା ପଡ଼ିଯାଉଛି !

କାହ୍ନୁ ॥ ସରକାର କହୁଛନ୍ତି ଯିଏ ତାକୁ ଧରିବ ତାକୁ ପାଞ୍ଚଲକ୍ଷ ଟଙ୍କା—ଯିଏ ତାକୁ ମାରିବ ତାକୁ ପାଞ୍ଚଲକ୍ଷ ଟଙ୍କା !

ଲକ୍ଷ୍ମୀ ॥ ତଥାପି ସେଇଟାକୁ କିଏ ମାରିପାରୁ ନାହାନ୍ତି ?

କାହ୍ନୁ ॥ ଦି'ଜଣ ବାଣୁଆ ପରା କହୁଛନ୍ତି ହାତୀଟାକୁ ସେମାନେ ମାରିଦେଲେଣି ବୋଲି !

ଲକ୍ଷ୍ମୀ ॥ କିଏ ବା ସେ ଦି'ଟା ? ମିଛୁଆ ଦି'ଟା ଯାକ ? ସେମାନେ ଯଦି ମାରିଦେଇଛନ୍ତି, ଏ ଖେଦା ଖେଦା ହାତୀ ଆସୁଛନ୍ତି କୁଆଡ଼ୁ ?

କାହ୍ନୁ ॥ ବାଣୁଆ ଦି'ଟା ରାଜଧାନୀ ଭିତରେ ହାତୀଟାକୁ କାହିଁକି ଖୋଜୁଛନ୍ତି ମା' ? ହାତୀଟା କ'ଣ ଖାଲି ରାଜଧାନୀ ଭିତରେ ଅଛି ?

ଲକ୍ଷ୍ମୀ ॥ ସବୁଠି । କୋଉ ଜଙ୍ଗଲରେ ହାତୀ ନାହିଁ କହିଲୁ ?

କାହ୍ନୁ ॥ ମା'—ସେ ବାଣୁଆ ଦି'ଟା ଆଇଲେଣି ।

ଲକ୍ଷ୍ମୀ ॥ ଏଇ ଯୋଉ ଆସୁଛନ୍ତି ? କ'ଣ ତାଙ୍କର ନାଁ ?

କାହ୍ନୁ ॥ ମୁଁ କ'ଣ ଜାଣିଛି ? ସମସ୍ତେ ଏମାନଙ୍କୁ ଡାକୁଛନ୍ତି 'କଲମ ବାଣୁଆ' ଓ 'ବଲମ ବାଣୁଆ'...

ଲକ୍ଷ୍ମୀ ॥ ଗୋଟାଏ ଦେଖୁରୁ କାନ୍ଧରେ ଲଙ୍ଗଳ ପକେଇଲାପରି କଲମଟେ ଧରିଛି କାହିଁକି ?

କାହ୍ନୁ ॥ ସେଇଟା ପରା "କଲମ ବାଣୁଆ" ! ଆରଟା ଯୋଉଟା କାନ୍ଧରେ ବର୍ଛା ପକେଇଛି ସେଇଟା 'ବଲମ ବାଣୁଆ' ।

ଲକ୍ଷ୍ମୀ ॥ ସେମାନେ ଆସିଲେଣି । ଚାଲ୍ ଖାଇବୁ ଚାଲ୍ । ଡେରିକି ହବଣି...

କଲମ ବାଣୁଆ ॥ ମୁଁ 'କଲମ ବାଣୁଆ' । କଲମ ହେଲା ମୋର ମାରଣାସ୍ତ୍ର !

ବଲମ ବାଣୁଆ ॥ ଆଜ୍ଞା ନମସ୍କାର ! ମୋ' ନାଁ । 'ବଲମ ବାଣୁଆ' । ମୋ' ଛବି ଆଗରୁ "ସମାଜ"ରେ ବାହାରିଛି । ମୁଁ ମୋର କ୍ଷେପଣାସ୍ତ୍ର 'ବଲମ୍'ରେ ବିଶ୍ୱାସ କରେ ।

[ଦୁହେଁ ମଞ୍ଚଟାକୁ ଗୋଟାଏ ଜଙ୍ଗଲ
ମନେକରି ବିପରୀତ ଦିଗରେ ଅର୍ଥାତ୍
ଜଣେ ବାମରୁ ଡାହାଣକୁ ଓ ଆଉ
ଜଣେ ଡାହାଣରୁ ବାମକୁ ପ୍ଲାପ୍ ପେଣ୍ଟି
ମାନଙ୍କ ପରି ମାର୍ଚ୍ଚିଂ କରି ଚାଲିଥିବେ
ଓ ନିଜ ନିଜର ସଳାପ କହୁଥିବେ]

କ. ବାଣୁଆ ॥ ଏଇଠି ରାଜଧାନୀ ଭିତରେ ଗୋଟେ ଜଙ୍ଗଲ୍ କେବେ ତିଆରି ହେଲା ?

ବ. ବାଣୁଆ ॥ ଏଇଟା ତା'ହେଲେ ଗୋଟାଏ ଜଙ୍ଗଲ୍ ?

କ. ବାଣୁଆ ॥ ନ ହେଲେ ବି କଳ୍ପନା କର ଏଇଟା ଗୋଟେ ଜଙ୍ଗଲ୍ !

ବ. ବାଣୁଆ ॥ କର । କିଏ ମନା କରୁଛି ?

(ତା'ପରେ କିଛି ସମୟ ପୁଣି ସେମାନେ ମାର୍ଚ୍ଚିଂ କଲେ)

ବ. ବାଣୁଆ ॥ କାହିଁ ? ହାତୀ କାହିଁ ?

କ. ବାଣୁଆ ॥ ମହାନଦୀରେ ଭାସିଗଲା ।

ବ. ବାଣୁଆ ॥ ମୁଁ ତାକୁ ମାରି ଦେଇଛି । ଆଉ ହାତୀ ନାହିଁ ।

କ. ବାଣୁଆ ॥ ତମେ ତ କଲମରେ ମାରିଚ ! ତା'ର ବହୁତ ଆଗରୁ ମୁଁ ଏଇ କଲମ ବାଣରେ ହାତୀ ବଂଶ ନିପାତ କରିଦେଇଛି । ବିନା ଅସ୍ତ୍ରେ ସମ୍ପୂର୍ଣ୍ଣ ସହାର ! ହାଃ-ହାଃ-ହାଃ...!

ବ. ବାଣୁଆ ॥ (ଆହୁରି ଜୋର୍‌ରେ) ହାଃ-ହାଃ-ହାଃ !! ଏଇଟା ଗୋଟେ ବାଘ୍ନାଟେ—

କ. ବାଣୁଆ ॥ ଲେଖି ଦେଇଛି ! ହାତୀ ମରିଗଲା ବୋଲି ପୋଥିରେ ଲେଟି-ଦେଇଛି ।

ବ. ବାଣୁଆ ॥ ଲେଟିଦେଲେ ହାତୀଟା ମରିଯିବ ? ତା'ହେଲେ ଏ କଲମଟା ମୁଁ ରଖିଛି କାହିଁକି ? ହଇ ହୋ'...

କ. ବାଙ୍ଗୁଆ ।। ଜାଣି ପାରିବନି । କଲମ ଧରି ବୁଲିବା ଲୋକ ହାତୀ କେମିତି କଲମରେ ମରେ ଜାଣିବ କେମିତି ? ଆହେ, ଇସ୍ତେ ହାତୀ କ'ଣ ? ହାତୀ ଉପରେ ବସିଥିବା ଲୋକ ବି ଗଡ଼ି ପଡ଼ୁଛି !

ବ. ବାଙ୍ଗୁଆ ।। ମନେ ମନେ । ମନେ ମନେ ଖୁବ୍ ଥାଅ !

କ. ବାଙ୍ଗୁଆ ।। ସୈନ୍ଧବ ଗାଙ୍ଗେୟ ସମତଳ ଭୂମିରେ ଦିନେ ମନ୍ତ୍ରର ଗୁଳି ଖାଇ ମରିଥିଲା ଏଇ ହାତୀ ! ଆଉଥରେ ମରିଥିଲା ଇଉଫ୍ରେଟିସ୍ ନଦୀ କୂଳରେ । ରାମାୟଣ ମହାଭାରତରେ ମୁଁ ଏମାନଙ୍କୁ କୋଟି କୋଟି ସଂଖ୍ୟାରେ ମାରି ଦେଇଥିଲି । ପୁରାଣର ପୃଷ୍ଠା ପୃଷ୍ଠା କାଗଜ ହାତୀମାନଙ୍କ ରକ୍ତରେ ଓଦା ହୋଇଯାଇଛି । କଲମ ଯୁଦ୍ଧରେ ଏଗାର ଥର ମୁଁ ପାଇଛି ପରମବୀର ଚକ୍ର ପଦବୀ ! ତା' ସାଙ୍ଗରେ ପାଟ, କୁଣ୍ଡଳ ଆଉ କଙ୍କଣ । ବର୍ତ୍ତମାନ ଶ୍ରୀସ୍-ରାଜା ମୁକୁଟ ପିନ୍ଧେଇବେ !

ବ. ବାଙ୍ଗୁଆ ।। କୋଉ ହାତୀ ମାରିଲ କେଜାଣି । ଖଟ ଉପରେ ଶୋଇ ଖାଲି ଛବି ପକେଇଛ ଗୁଡ଼ାଏ !

କ. ବାଙ୍ଗୁଆ ।। ସରକାର କହିଲେ ଏଇଟା ଗୋଟାଏ ବଙ୍ଗୁଆ ହାତୀ ନୁହେଁ !

ବ. ବାଙ୍ଗୁଆ ।। ମହାନଦୀରେ ଭାସି ଭାସି କେମିତି ଆସିଲା ତା' ହେଲେ ?

କ. ବାଙ୍ଗୁଆ ।। ମୁଁ ଶୁଣିଛି ହାତୀଟା ସର୍କସ ଭିତରେ ଥିଲା । ଗୁଡ଼ାଏ ଫିଟସ୍ ଦେଖଉଥିଲା । ପଛଗୋଡ଼ରେ ଠିଆ ହୋଇ ଅଗ ଗୋଡ଼ ଟେକୁଥିଲା । ଶୁଣ୍ଢକୁ ଉପରକୁ ଉଠଉଥିଲା ଆଉ ପକଉଥିଲା । ନାଚ କରୁଥିଲା, ପୂଜା କରୁଥିଲା ଆଉ ବେଳେବେଳେ ଗୀତ ବି ଗାଉଥିଲା । ଆଉ ହଠାତ୍ ପାଗଳା ହୋଇଗଲା କି କ'ଣ କେଜାଣି, ରାସ୍ତାରେ ଧସେଇ ବୁଲୁଛି...।

ବ. ବାଙ୍ଗୁଆ ।। (ଖୁବ୍ ଜୋର୍‌ରେ ହସିଲା)
ରାସ୍ତା ଉପରେ ବୁଲୁଛି ତ ମଲା କେମିତି ? କାହାକୁ ମାରିଛି ବୋଲି କହୁଥିଲ ? ଠେକୁଆ ନା କୁକୁଡ଼ା ?

କ. ବାଙ୍ଗୁଆ ।। ମୁଁ ଜାଣିଥିଲି । ପଚ୍ଛର କ'ଣ ଜାଣିଥିଲି !
ମୁଁ ଜାଣିଥିଲି ଯେ ହାତୀଟା ଏମିତି ଦିନେ ପାଗଳା ହୋଇଯିବ

ଓ ରାସ୍ତା ଉପରେ ଶୁଣ୍ଢ଼କୁ ଟେକ ଯାହା ପାଇବ ତାହା ଉପୁଡ଼େଇ ପକେଇବ । ଦେଖିପାଇଁ ପରା ମୁଁ ଲେଖିନେଇଛୁ ମୁଣ୍ଡରେ ତା'ର ଗଜମୁକ୍ତା ଅଛୁ । ତାକୁ ମାରି, 'ଗଜମୁକ୍ତା'ଟା ଆଣି ମୁଁ ରାଜାଙ୍କୁ ଦେଇ ଦେଇଛୁ ।

ବ. ବାଣ୍ଡୁଆ ॥ ଏଗୁଡ଼ାକ ତାହାଣ୍ଡିଛ କଥା । କୋଉ ହାତୀଟା ମୁଣ୍ଡରେ ଗଜ-ମୁକ୍ତା ଥିଲ ବୋଲି ତମେ ଅବିଷ୍କାର କରି ପକେଇଚ ?

କ. ବାଣ୍ଡୁଆ ॥ ଗୋଟାଏ ସାଂସ୍କୃତିକ ସାଧାରଣ ଜ୍ଞାନ ନଥାଇ ତମେ ହାତୀ ମାରିବା ପାଇଁ ବୁଲୁଚ ନା କ'ଣ ? ହାତୀଟାକୁ ମାରିବା ଆଗରୁ ତାକୁ ପ୍ରଥମେ ଚିହ୍ନିବା ଦରକାର । **I mean, the identity of the elephant !** ତା'ପରେ ଚିନ୍ତା କରିବ ଏଇଟାକୁ କେମିତି ମାରିବ ? ତମେ ନିଜ ଅନୁଭୂତିରୁ ଜାଣିଥିବ ଯେ ଆଉ ଦିନ୍ଟାରେ ହାତୀ ମରୁନାହାନ୍ତି ! ହଇଏ କାଲି ପରା ସମାଜରେ ବାହାରିଥିଲ —ପୋଲିସି ଅବ୍‌ଦୁ ଅବ୍‌ଦୁ ଗୁଳି ଫୁଟେଇଲ । ତଥାପି ହାତୀ ଦେହରେ ଯେଗୁଡ଼ା ବାଜୁନି !

ବ. ବାଣ୍ଡୁଆ ॥ ସେମିତି କହିପାରିବନି । ଆମେ ମାରିଲୁ, ସେଇଟା ପୁଣି ହାତୀ ଦେହରେ ବାଜିବନି ? କାହିଁକି ? ଆମେ କ'ଣ ଅନ୍ଧ ନା କଣା ?

କ. ବାଣ୍ଡୁଆ ॥ କଣା ହେଲେ ତ ରକ୍ଷା ଅଛୁ । ସେମିତି କହିବାକୁ ଗଲେ ଅଧିକାଂଶ ବାଣ୍ଡୁଆ ତ କଣା । ତମେ କିନ୍ତୁ ସଂପୂର୍ଣ୍ଣ ଅନ୍ଧ ଭଳି ମନେ ହେଉଛ !

ବ. ବାଣ୍ଡୁଆ ॥ ଜଙ୍ଗଲ ନ ଦେଖି ହାତୀ ବିଷୟରେ ଭାଷଣ ଦଅନି ଭାଇ ! ବହୁତ ଭାଷଣ ଶୁଣିଲୁ । ଏଣିକି କ'ଣ କାମ କରିବା କଥା କରି ଦେଖାଅ । ପୋଲିସ୍ ସାତ ହଜାର ଦୁଇଶହ ଏକୋଇଶଟା ଗୁଳି ମାରିଲ—ଗୋଟେ ହେଲେ ବାଜିଲ ନାହିଁ ? ଏ କଥା ତମେ ବାଣ୍ଡୁଆ ଜାତିକୁ କହି ସେମାନଙ୍କର ଇତିହାସରେ କଳଙ୍କ ଲଗାଇବାକୁ ଚେଷ୍ଟା କରୁଛ ? ମୁଁ କହିବି ହାତୀ ଦେହରେ ଗୁଳି ବାଜିଛୁ ।

କ. ବାଣ୍ଟିଆ ॥ ବାଙ୍କଟ୍ଟ ଯଦ ମରନ କେମିତ ? ଗ୍ରକଯାମାରେ ବୁଲୁଛୁ କେମିତ ? ମାରବ କାଇଁକ ? ସେମିତ ଧର ନେଇଗଲେ ତ ପାଞ୍ଚଲକ୍ଷ ଟଙ୍କା ମିଳବ !

ବ. ବାଣ୍ଟିଆ ॥ ପାଗଲା ହାତୀଟାକୁ ଧର ନେଇଯିବ ବୋଲ କଳ୍ପନା କରୁଛ ? ଏଇଟା କ'ଣ ଚୌକ ଉପରେ ବସି ରଚନା ଲେଖା ହେଉଛି ? ଆରେ ବାବୁ ହାତୀକୁ ପ୍ରଥମେ ଔଷଧ ଦଆଯିବ । ହାତୀଟାର ପ୍ରକୃତ ବଦଳବ । ବ୍ୟବହାର ବଦଳବ । ଆଚରଣ ବଦଳବ । ତା'ପରେ କ୍ରମଶଃ ହାତୀ ଆଉ ତମ୍ ଭିତରେ ଗୋଟିଏ **relation-ship develop** କରବ । ଘୃଣା ମଧ୍ୟ ଗୋଟେ ପ୍ରକାର **relationship** । କାରଣ ସଂପର୍କ ଦୁଇ ପ୍ରକାର ।

କ. ବାଣ୍ଟିଆ ॥ ଦେଖ ଭାଇ ! ଭାଷଣ କେବଳ ଆମେ ଦେଇପାରବୁ । ଆମେ ସେ ଠିକା ସମାଜପତିମାନଙ୍କଠୁ ନେଇ ସାରିଛୁ । ତମେ ବଣରେ ବୁଲୁଥିବା ଲୋକ, ଏଇଠି ତତ୍ତ୍ୱ କଥା ସଂପର୍କରେ ଭାଷଣ ଦେଇ ପାରବ ନାହିଁ ।

ବ. ବାଣ୍ଟିଆ ॥ ତମେ ଭୁଲ ଯାଉଛ ଯେ କଲମ ଆଗରୁ ବଲମ ଥିଲା । ବଲମ ଯେତେବେଳେ ଥିଲା ସେତିକବେଳେ ହାତୀମାନେ ଜଙ୍ଗଲରେ ସଂଖ୍ୟା ଗରଷ୍ଠ ଥିଲେ । ତା'ପରେ ମୁଁ ଶିକାର କରଛୁ ଆଫ୍ରିକାର ଜଙ୍ଗଲ ଭିତରେ...ହିମାଳୟର ଶୃଙ୍ଗର ଉପରେ .. ଆଟଲାଣ୍ଟିକ୍ ସମୁଦ୍ରର ରହସ୍ୟମୟ ଗର୍ଭ ତଳେ...କୋଉଠି ହାରଯାଇଛି । ହାତୀର ପଦାଘାତରେ ଭାଙ୍ଗି ଯାଇଛି ମୋର ପାଦ । କହୁଦନ ଚୁଲବା ବନ୍ଦ ହେଇଯାଇଛୁ । ପୁଣି ଥରେ ମୁଁ ଯାଉଛୁ ଶିକାର କରବା ପାଇଁ । ମୁଁ ସୃଷ୍ଟିର ସେଇ ଆଦମ ହାତୀଟାକୁ ଚରଦନ ମାରବା ପାଇଁ ଚେଷ୍ଟା କରଛୁ ।

କ. ବାଣ୍ଟିଆ ॥ କରଥିବ, କରଥିବ । ତମ କଥାକୁ ମୁଁ ଅବଶ୍ୱାସ କରବ କାଇଁକ ? ମୋର କହିବା କଥା ହେଲା ଏ ଲୋକମାନେ ସବୁ ମୂର୍ଖ । ନହେଲେ ମରଯାଇଥିବା ହାତୀଟାର ଭୂତ ଦେଖି ଏମାନେ ଏମିତ ଡରୁନଥାନ୍ତେ ! ଅସଲ କଥା ହେଲା—ହାତୀ ଗୋଟେ **complex......fear complex......**ହାତୀ

ବୋଲି ଗୋଟେ ଜଡ ବସ୍ତୁ ନାହିଁ.........ଏଇଟା ଗୋଟେ abstract ହାତୀ......ତା'ର ରୂପ ନାହିଁ.........ଆକାର ନାହିଁ ।

ବ. ବାଣ୍ଡୁଆ ।। ତମେ ବୂଲିବୁଲି ସେଇ ଜାଗାକୁ ଫେରି ଆସିଛ ଭାଇ । ମୋଟ କଥା ହେଲ—'ହାତୀଟା ମରିଯାଇଛି !'

କ. ବାଣ୍ଡୁଆ ।। ଠିକ୍ କଥା କହିଲ । ହାତୀଟା ଆଉ ନାହିଁ ।

ବ. ବାଣ୍ଡୁଆ ।। ଏ ଲୋକ ଗୁଡ଼ାକ ସମସ୍ତେ ମୂର୍ଖ । ଯାହା ନାହିଁ ସେଇଥିରେ ବିଶ୍ୱାସ କରି ଯାହା ଅଛି ସେଇଟାକୁ ସ୍ୱୀକାର କରୁନାହାନ୍ତି ।

କ. ବାଣ୍ଡୁଆ ।। ମୋଟ କଥା ହେଲ—ହାତୀଟା ମରିଯାଇଛି ।

ବ. ବାଣ୍ଡୁଆ ।। ଏବଂ ମୁଁ ତାକୁ ମାରିଦେଇଛି ।

କ. ବାଣ୍ଡୁଆ ।। ମୁଁ ମଧ୍ୟ ତାକୁ ମାରିଦେଇଛି ।

ବ. ବାଣ୍ଡୁଆ ।। କାଲି ସମାଜରେ ମୋ' ଫଟୋଟା ଛପା ହେଇଛି ।

କ. ଗାଣ୍ଡୁଆ ।। ତା'ପରେ ମୋ' ଫଟୋଟା ମଧ୍ୟ ବାହାରିଥିଲା । ଦେଖିନ ?

ବ. ବାଣ୍ଡୁଆ ।। ମୁଁ ଦେଖିନ ।

କ. ବାହୁଆ ।। ମନେକର ହାତୀଟା ମରି ଶୋଇଛି । ଆଉ ଦୁ'ପଟେ ଆମେ ଦୁ'ଜଣ ସଗର୍ବରେ ଠିଆ ହେଇଛେ ।

ବ. ବାଣ୍ଡୁଆ ।। ମୁଁ ଧରିଛି ମୋର ବର୍ଚ୍ଛା ।

କ. ବାଣ୍ଡୁଆ ।। ଆଉ ମୁଁ ଧରିଛି ମୋର କଲମ ।

ବ. ବାଣ୍ଡୁଆ ।। **Yes, Ready......ismile** (ଇସ୍‌ମାଇଲ୍ !) **One ......two......Thank you !** (ଫଟୋ ଉଠେଇବା **mimic**)

କ. ବାଣ୍ଡୁଆ ।। **Thank you !**

[“ହାତୀ ଉପଦ୍ରବ” ! “ହାତୀ ଉପଦ୍ରବ !”
...ଆପଣମାନେ ସାବଧାନରେ ରାସ୍ତା
ଉପରେ ଚଲବୁଲ କରନ୍ତୁ......ହାତୀ
ଉପଦ୍ରବରେ ଯେଉଁମାନେ ମରିଛନ୍ତି
ସେମାନଙ୍କ ଶୋକ ସନ୍ତପ୍ତ ପରିବାର-
ବର୍ଗଙ୍କୁ ଶୋକବାର୍ତ୍ତା ଜଣେଇ ଦିଆଯିବା
ସଙ୍ଗେ ସଙ୍ଗେ ପାଞ୍ଚଶହ ଟଙ୍କା କ୍ଷତି
ପୂରଣ ମିଳୁଛି । ଆପଣମାନେ ନିଜ ନିଜ
ମ୍ୟୁନିଟ୍, ଡେକ୍ଟର୍ ଓ .ଗ୍ରାମପଞ୍ଚାୟତ
ଅଫିସମାନଙ୍କରେ କର୍ତ୍ତୃପକ୍ଷଙ୍କୁ ସାକ୍ଷାତ୍
କରନ୍ତୁ”—ଏଇତକ ପ୍ରଥମେ ଲୋକ-
ସଂପର୍କ ବିଭାଗ ତରଫରୁ ପ୍ରଚାରିତ
ହେବ । ତା’ପରେ ସ୍ୱୟଂ ହାତୀଟି ମଞ୍ଚ
ଉପରକୁ ଆସିବ । ଅବଶ୍ୟ ତା’ ସଙ୍ଗରେ
ଯେଉଁ ପାଇଜାମା, ପଞ୍ଜାବୀ ଓ ଟୋପି
ପିନ୍ଧା ବ୍ୟକ୍ତିଟି ବୁଲୁଛନ୍ତି ସେ ନିଜକୁ
ହାତୀଭାଷା ବିଶାରଦ ବୋଲି କହୁଛନ୍ତି ।
ଏଇ ହାତୀକୁ ଦେଖି ବାଣୁଆ ଦୁଇଜଣ
ଭୟରେ ଦୌଡ଼ି ପଳେଇବେ—ଦୁହେଁ
ଦୁଇ ଦିଗରେ । ତା’ପରେ ହାତୀର
ଗର୍ଜନ ଶୁଭିବ]

ହାତୀଭାଷା ବିଶାରଦ ॥ ହାତୀ ବାବୁ ତାଙ୍କ ଭାଷାରେ ଯାହା କହୁଛନ୍ତି ତାକୁ ଓଡ଼ିଆରେ ଅନୁବାଦ କଲେ ଜଣାଯିବ ଯେ, ହାତୀବାବୁ ଆପଣମାନଙ୍କୁ ନମସ୍କାର ଜଣାଉ ଅଛନ୍ତି ! ଆପଣମାନେ ଭୟଭୀତ ହୁଅନ୍ତୁ ନାହିଁ । କାରଣ ସେ ବଣୁଆ ହାତୀ ନୁହନ୍ତି । ସର୍କସ ହାତୀ ମଧ୍ୟ ନୁହନ୍ତି, ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା—ଗତ ଜନ୍ମରେ ମଧ୍ୟ ସେ ହାତୀ ନଥିଲେ । (ଗଳା ସ୍ୱର ତୀବ୍ର ହୋଇ ଉଠିବ) କ୍ରମଶଃ ପ୍ରୋଟିନ୍, ସୋୟାବିନ୍, ଅଣ୍ଡା, ଚିକେନ୍, ବିଶଆନା ବହୁଦିନ ଧରି ଭକ୍ଷଣ କରନ୍ତେ ଧୀରେ ଧୀରେ ତାଙ୍କର କଲେବରର ଅଭ୍ୟୁଦୟ ଘଟିଲା ଏବଂ ଶେଷରେ

ସେ ଗୋଟିଏ ହାତୀରେ ରୂପାନ୍ତରିତ ହେଲେ । (ଗର୍ଜନ)ହାତୀବାବୁ ଯାହା କହୁଛନ୍ତି ତାକୁ ଓଡ଼ିଆରେ ଅନୁବାଦ କଲେ ଜଣାଯାଏ ଯେ, ଏହା ତାଙ୍କର ନିଜର ଦୋଷ ନୁହେଁ । ଆପଣମାନେ ମୋଟାମୋଟି ଏଥିପାଇଁ ଦାୟୀ । ତାଙ୍କୁ ଏତେ ଗୁଡ଼ିଏ ପଦାର୍ଥ ଖାଇବାକୁ ଦେଇଥିବାରୁ ତାଙ୍କର ଶରୀର ସ୍ଥୂଳ ହେଲା ଏବଂ (ହାତୀର ଗର୍ଜନ ତୀବ୍ର ଭାବରେ ଶୁଣାଗଲା) ଆଜିକାଲି ତାଙ୍କର ଶୁଣ୍ଢ ଉଠୁଛି । କିନ୍ତୁ ସେଥିପାଇଁ ସେ ଦାୟୀ ନୁହନ୍ତି । (ଗର୍ଜନ) ହାତୀବାବୁ ଯାହା କହୁଛନ୍ତି ତା'ର ଓଡ଼ିଆ ଅନୁବାଦ ହେଲା—ତାଙ୍କର ଉତ୍ତୋଳିତ ଶୁଣ୍ଢକୁ ଦେଖି ଆପଣମାନେ ଆତଙ୍କିତ ହୁଅନ୍ତୁ ନାହିଁ । ଆଜି ପାଇଁ ଏତିକି । ହାତୀବାବୁ ଆହୁରି ଏପରି ଅନେକ ସଭାରେ ଫୁଲମାଳ ଗ୍ରହଣ କରିବେ ଏବଂ ବହୁ ଚଢ଼ିଆଖାନା ପରିଦର୍ଶନ କରିବେ ବୋଲି କହୁଛନ୍ତି । ତେଣୁ କ୍ଷମା କରିବେ ବନ୍ଧୁଗଣ, ଆମେ ଏଠାରେ ବେଶୀ ସମୟ ରହି ନ ପାରି ଦୁଃଖିତ । ତେବେ ଆମେ ନିଶ୍ଚୟ ଆପଣମାନଙ୍କ ପାଖକୁ ଆସିବୁ । ନମସ୍କାର !

(ହାତୀଭାଷା ବିଶାରଦ ଓ ହାତୀ ଚାଲିଗଲା ପରେ ବୃଦ୍ଧ ଲୋକଟି ଝଡ଼ଭଳି ମାଡ଼ିଆସିଛି ମଞ୍ଚ ଉପରକୁ । ସେ ଏଇଥର ଆସିଲା ବେଳକୁ ପାଗଳ ହୋଇଯାଇଛି । ଅନ୍ତତଃ ସେମିତି ଜଣାପଡ଼ୁଛି)

ବୃଦ୍ଧ ॥ କାହିଁ .. ? କୁଆଡ଼େ ଗଲା ହାତୀଟା ? ଫୁଲମାଳ ନବୁ, ନାଇଁରେ ହାତୀ ? ଆଃ' ! ଆ'ମ ଟିକିଏ ମୋ' ପାଖକୁ...!! ଦନେଇ ମାଷ୍ଟ୍ରକୁ ଚିହ୍ନି ନାଉଁ ? ଆରେ ଦନେଇ ମାଷ୍ଟ୍ର ମ ? ତତେ କେତେ ଦୁଧ, ସର, ନଡ଼ିଆ ଖାଇବାକୁ ଦେଇଛି...ଶେଷକୁ...ଶେଷକୁ (କଣ୍ଠ ଭାଙ୍ଗି ପଡ଼ିଲା) ତୁ' ତା' ସଂସାରଟାକୁ ଧ୍ୱଂସ କରିଦେଇ ଗଲୁ ? ହଇରେ ହାତୀ !ଏ' ହାତୀ...!!ମୋ' କାଳିଆ ହାତୀରେ ! ଏ' ମୋ' କାଳିଆ ହାତୀ !! ତୋ' ପାଇଁ ମୁଁ ଦୟଣାର ମାଳ ଆଣିଲି—ଦେଲି କେତେ ତୁଳସୀର ମାଳ !! ତୁ' ପୁଣି ନିଠୁର ହେଲୁ ? କାଳିଆରେ, ମୋ' ଆଖିରେ ଖାଲି ଅଶ୍ରୁଜଳ ! (ଭେ' ଭେ ହେଇ କାନ୍ଦି ଉଠିଲେ ଦନେଇ ମାଷ୍ଟ୍ରେ) ତୋ' ପାଇଁ ଆଣି ଦେଲି ଗେରୁଆ ବସନ...କାଳିଆ ହାତୀ ! ତୁ ଥାଉ ଥାଉ ମୋ' ଘର ଉଜୁଡ଼ି ଗଲା କାଳିଆ ?

(ଦୂରରୁ ଶୁଭିଲ ଗୀତ : "କାଳିଆ ହାତୀରେ
ମୋର କାଳିଆହାତୀ")

କାଳିଆ ହାତୀରେ ମୋର
କାଳିଆ ହାତୀ
ତତେ ପୁଣି ଦେଖିବାକୁ
ବଳୁଛି ମତି ॥

(କ୍ରମଶଃ ଗୀତର ସ୍ୱର ଦୂରେଇ ଦୂରେଇ ଗଲା । ଦନେଇ ମାଙ୍କ୍ଷ କାନ୍ଦୁଥିଲେ, ସେଇଠିକି ଆସିଲା ଲକ୍ଷ୍ମୀ)

ଲକ୍ଷ୍ମୀ ॥ ବାପା ! ବାପା !

ବୃଦ୍ଧ ॥ କିଏ ? କିଏ ମତେ ବାପା ବୋଲି ଡାକିଲା ?

ଲକ୍ଷ୍ମୀ ॥ ବାପା, ମୁଁ ତମର ଲକ୍ଷ୍ମୀ ! ଆସ, ଘରକୁ ଯିବା !

ବୃଦ୍ଧ ॥ କୋଉ ଘର ? ଲକ୍ଷ୍ମୀ ଚାଲିଗଲା ଦିନୁ ମୋର ଆଉ ଘର କାହିଁ ? ମୁଁ ଗାଁ ଛାଡ଼ି ଦେଇଛି । ଲକ୍ଷ୍ମୀ ଚାଲିଗଲା ଦିନୁ ଦନେଇ ମାଙ୍କ୍ଷ ତା'ର ଗାଁ ଭିଟାମାଟି ଛାଡ଼ିଦେଇଛି ! ଯୋଉ ଦିନ ହାତୀବାବା ସାଙ୍ଗରେ ସିଏ ଗୋପାଳପୁର ଛାଡ଼ି ଚାଲିଗଲା, ସେ ଦିନଠୁ ଦନେଇ ମାଙ୍କ୍ଷ ମୁଠାଏ ଭାତ ଖାଇ ପାରିନି । ସ୍ତ୍ରୀ ମରିଯାଇଥିଲା ଅନେକ ଆଗରୁ... ଖାଲି ଲକ୍ଷ୍ମୀଟା ଥିଲା ବୋଲି ମୁଠାଏ ଫୁଟେଇ ଦଉଥିଲା ।

ଲକ୍ଷ୍ମୀ ॥ (କାନ୍ଦି କାନ୍ଦି) ଲକ୍ଷ୍ମୀ ମରିନାଇନି ବାପା ! ତମ ଆଗରେ ଠିଆ ହେଇଛି । ଆଜି ମଧ୍ୟ ତମ ପାଇଁ ଦ୍ୱୋଷେଇ କରି ବାଢ଼ି ଦେଇଛି । ଆସ ଘରକୁ ଯିବା ?

ବୃଦ୍ଧ ॥ କୋଉ ଘର ? ବେଶ୍ୟା ପଡ଼ାର ସେ ଅସନା କେଁାପଡ଼ି ଘରଟା ତା' ଘର ନୁହେଁ । ତା'ଘର ଗୋପାଳପୁରରେ !

ଲକ୍ଷ୍ମୀ ॥ ଆଉ ମୁଁ ଗୋପାଳପୁର ଫେରିଯାଇ ପାରିବିନି ବାପା, ତମେ ମୋ' ପାଖରେ ରହିବ । ଆମେ ଯୋଉଠି ଅଛେ ସେଇଠି ଆମର ଘର । ତମ ନାତି କାଳିଆ ପାଠ ପଢ଼ି ଲଣି...ବଜାରରେ ଖବର କାଗଜ ବିକି ଦିନକୁ ଦଶଟଙ୍କା ରୋଜଗାର କରୁଛି...ଆସ, ତାକୁ ଦେଖା କରିବନି ?

ବୃଦ୍ଧ ॥ ସିଏ କାହିଁକି ମୋର ନାତି ହେବ ? ସେଇଟାର ବାପ ଠିକ୍ ନାହିଁ... ।

ଲକ୍ଷ୍ମୀ ॥ ତଥାପି ତମ ଝିଅ ଲକ୍ଷ୍ମୀ ତାକୁ ଜନ୍ମ ଦେଇଛି ବାପା...ସିଏ ତମ ଝିଅର ପୁଅ ।

ବୃଦ୍ଧ ॥ (ମୁଣ୍ଡ ହଲାଇ) ନା...ତମେ ସମସ୍ତେ ମତେ ଠକି ଦେଉଚ ! ମୁଁ ସଂସାର ବିଷୟରେ ବେଶୀ କିଛି ଜାଣିନି ବୋଲି ମତେ ଦଳି ଠକି ଦେଇଚ ! ସେ ହାଣ୍ଡିବାବାଟାକୁ ଖୁଆଇ ପିଆଇ ପୋଷିଥିଲି ବୋଲି ଶେଷକୁ...ମୋର ଘରୁ ମୋ' ଝିଅକୁ ନେଇ ଚାଲିଗଲା...ମତେ ଅନ୍ଧ କରି ଦେଇଗଲା...ଯୋଉଦିନ ସେ ବାବାକୁ ପାଇବି ତାକୁ ଟାଙ୍ଗି ଗଛରେ ହାଣି ପକେଇବି...ଶଳା, ଦନେଇ ମାଷ୍ଟ୍ରଙ୍କୁ ଚିହ୍ନି ନାହିଁ ହାଣ୍ଡିବାବା ! ହାଣ୍ଡିବାବାକୁ ମୁଁ ଶୃଗାଳବାବା କରେଇ ଦେବି ! ଶଳା, ମୋର ମସ୍ତାଟା ଭଲ୍ କରିଦେଇଥିଲା ବୋଲି...

ଲକ୍ଷ୍ମୀ ॥ ବାପା, ତମେ ଘରକୁ ଚାଲିଲ ପ୍ରଥମେ ! ସେ ଗୁଡ଼ା ମନେପକାଇ ଆଉ କ'ଣ ହେବ ?

ବୃଦ୍ଧ ॥ ମୁଁ ଏଇଠି ଯୋଡାଯୋଡ଼ି ହୋଇ ବସିଛି । ତୁ ଘରକୁ ଯା'— ଗୋପେଇବାସ କରିବୁ ! (କାନ୍ଦିବାକୁ ଲାଗିଲେ)

ଲକ୍ଷ୍ମୀ ॥ ଏଇଠି ବାହାରେ ପରା ଅଣ୍ଡା ପଡ଼ିଛି ବାପା...ଦେଖୁନ କାଶ ହଉଚି କେମିତି ? ଛି ! ଏଇଠି ଛେପ ପକାଅନି, ସମସ୍ତେ ଘୃଣା କରିବେ ।

ବୃଦ୍ଧ ॥ ହାଣ୍ଡିବାବାଙ୍କୁ ଖବର ଦେଇଛୁ ?

ଲକ୍ଷ୍ମୀ ॥ ନିଜେ ପରା ଯାଇଥିଲି ।

ବୃଦ୍ଧ ॥ (କାଶି କାଶି) ନିଜେ ଯାଇଥିଲୁ ? ବାବା କ'ଣ କହିଲେ ?

ଲକ୍ଷ୍ମୀ ॥ ବାବା ଖୁବ୍ ଆଦର କଲେ । କହିଲେ, 'ଦନେଇ ମାଷ୍ଟ୍ରଙ୍କ ଝିଅ ତୁ ?' ତା'ପରେ ମିଠେଇ ଖାଇବାକୁ ଦେଲେ ।

ବୃଦ୍ଧ ॥ ଅଲେ ବୋକି, ସେଇଟା ମିଠେଇ ନୁହେଁ ଲୋ'...ଶିବଙ୍କ ପ୍ରସାଦ... ତୁ ଆଜି ସେ ପବିତ୍ର ପ୍ରସାଦ ଖାଇ ଧନ୍ୟ ହୋଇ ଯାଇଛୁ... ପରୀକ୍ଷାରେ ଫାଷ୍ଟ ହବୁ ଏଥର !

(ଏତିକିବେଳେ ପୁଣି ଶୁଭିଲା ଗୀତ)

କାଳିଆ ହାତୀରେ ମୋର କାଳିଆ ହାତୀ
ତତେ ପୁଣି ଦେଖିବାକୁ ବଳିଛି ମତି ।
କାଳିଆରେ ଅଗତିର ତୁ ପରା ଗତି
କଳିବାକୁ ତତେ ମୋର ନାହିଁ ଶକତି ॥

(ଏବଂ ପ୍ରବେଶ କଲେ 'ହାତୀବାବା' । ଗୈରିକ ବସନ ପରିହିତ)

ବାବା ॥ ତୁମ୍ଭେ ମତେ ସ୍ମରଣ କଲ ବାବା ?

ବୃଦ୍ଧ ॥ ବାବା, ଏ ଦୁରାରୋଗ୍ୟ ଯକ୍ଷ୍ମା ରୋଗ ନେଇ ମୁଁ ଆଉ ବେଶୀ ଦିନ ବଞ୍ଚି ପାରିବନାହିଁ । ମୋର ଗୋଟିଏ ବୋଲି ଝିଅ । ଭାସିଯିବ ପ୍ରଭୁ !

ବାବା ॥ ଭାସିଯିବା ପୂର୍ବରୁ ମୁଁ ତାକୁ ଅଟକାଇ ଦେବି, ଖସିଯିବା ପୂର୍ବରୁ ମୁଁ ଠିକ୍ ଯାଗାରେ ତାକୁ ଧରି ପକେଇବି ।

ବୃଦ୍ଧ ॥ ତମ ପାଖରେ ମୁଁ ଚିର କୃତଜ୍ଞ ରହିବି ବାବା ! ମୋର ଏଇ ଯକ୍ଷ୍ମା ରୋଗକୁ ଭଲ କରିଦିଅନ୍ତୁ ! ବାବା, ମୁଁ ଆପଣଙ୍କ ଗୋଡ଼ ତଳେ ପଡ଼ୁଛି !

ବାବା ॥ ସବୁ ସେଇ କାଳିଆ ହାତୀର ମହିମା ! ମୋ ହାତରେ କିଛି ନାହିଁ ।

ବୃଦ୍ଧ ॥ ଆପଣ କିଛିଏ ମନ୍ତ୍ର କରିଦିଅନ୍ତୁ ବାବା !

ବାବା ! ଏତେ ଅସ୍ଥିର ଚିନ୍ତ ହୁଅ ନାହିଁ ଦନାଇ । ମୁଁ ପ୍ରତିଶ୍ରୁତି ଦେଉଛି ତୁମ୍ଭର ଶରୀର ଆରୋଗ୍ୟ ହେବ ।

ଲକ୍ଷ୍ମୀ ॥ ବାବା, ଆପଣ ଦୟା କରନ୍ତୁ ।

ବାବା ॥ ବସ ଦନାଇ ।

(ବାବା ତା'ପରେ ପୂଜା ଆରମ୍ଭ କରିଦେଲେ)

ଓଁ ଶିବାୟ ନମଃ ! ଓଁ ଦୁରାରୋଗ୍ୟ ରୋଗ ହରଣକାରୀ, ଶ୍ମଶାନବାସୀ, ବଂ ବଂ ବଂ ବଂ ଶିବ ଶିବ ଦନେଇ ମାଣ୍ଡ୍ରପ୍ୟ ଯକ୍ଷ୍ମାରୋଗ ହନ ହନ ! ପଚ ପଚ, ହରସ୍ୱ ହରସ୍ୱ, ପଚସ୍ୱ ପଚସ୍ୱ, ମଥ ମଥ, ଦମ ଦମ, ଆରୋଗ୍ୟ କୁରୁ କୁରୁ ସ୍ୱାହା...ଫୁଃ !!

ଦନେଇ ! ତୁମ୍ଭର ରୋଗ ଆରୋଗ୍ୟ ହୋଇଯାଇଛି । ତୁମ୍ଭେ ଅନ୍ୟ ଥର ଆଶ୍ରମକୁ ଆସିଲା ବେଳେ ଏହି ରୋଗ ଆଉ ନଥିବ ।

ଲକ୍ଷ୍ମୀ ॥ ବାବା, ଆଉଥରେ କେତେବେଳେ ଆସିବେ । ମୁଁ ଯାଇ...

ବାବା ।। ଚିନ୍ତା ନାହିଁ ବାଳକେ ! ଆମ୍ଭେ ଇଚ୍ଛା କଲେ ତୁମ୍ଭ ଦେହରେ ପୁନଶ୍ଚ ଆବିର୍ଭାବ ହୋଇପାରୁ ! ଏବଂ ସେତେବେଳେ ତୁମ୍ଭର ମନସ୍କାମନା ପୂର୍ଣ୍ଣ କରିବୁ !

(ଦୁହେଁ ସାଷ୍ଟାଙ୍ଗ ପ୍ରଣାମ କଲେ ଓ ବାବା ଅଦୃଶ୍ୟ ହେଲେ)

ଲକ୍ଷ୍ମୀ ।। କେମିତି ଲାଗୁଛି ବାପା ?

ବୃଦ୍ଧ ।। ହଁ, ଟିକିଏ ଭଲ ଲାଗୁଛି !

ଲକ୍ଷ୍ମୀ ।। ତା'ମାନେ ବାବାଙ୍କ ମନ୍ତ୍ର ଠିକ୍ କାମ ଦେଉଛି ।

ବୃଦ୍ଧ ।। ବାବା ଏ ବିଦ୍ୟାରେ ଅତି ସିଦ୍ଧ ପୁରୁଷ । ଅସଲ କଥା ମା', ତତେ ଯେତେବେଳେ ଦଶବର୍ଷ, ହାଡ଼ିବାବା ଜଗତାରିଣୀ ପୀଠରୁ ସିଦ୍ଧ ହୋଇ ଏଇ ଗାଁ ଠାକୁରାଣୀଙ୍କ ପାଖରେ ଆବିର୍ଭାବ ହେଲେ । ରାତିରେ ରହୁଥାନ୍ତି ଶିବ ମନ୍ଦିରରେ । ଶହ ଶହ ସାପ ସେଇଠି । ତଥାପି ତୁ' ଆଶ୍ଚର୍ଯ୍ୟ ହବୁ ମା'—ବାବାଙ୍କର କିଛି କ୍ଷତି ହେଉ ନଥାଏ ।

ଲକ୍ଷ୍ମୀ ।। ଆଶ୍ରମଟା ଖୁବ୍ ସୁନ୍ଦର ହୋଇଛି । ବୁଝିଲ ବାପା, ବାବା କହୁଛନ୍ତି ଏ ବର୍ଷ ମତେ ସିଏ ଫାଷ୍ଟ କରେଇ ଦେବେ ।

ବୃଦ୍ଧ ।। ହେ ପ୍ରଭୁ ଜଗନ୍ନାଥେ ! ମୋ' ଲକ୍ଷ୍ମୀଟା ଉପରେ ନଜର ଥାଉ । ହଉମା' ତୁ' ରୋଷେଇ ବାସ କର । ମୁଁ ପରିବା ନେଇ ଆସୁଛି !

ଲକ୍ଷ୍ମୀ ।। ତମେ ବିଶ୍ରାମ କର । ମୁଁ ନେଇ ଆସୁଛି ।

ବୃଦ୍ଧ ।। ଖବୁତ ମୁଁ ବଜାର କରି ଫେରି ଆସିପାରିବ !

ଲକ୍ଷ୍ମୀ ।। ନାହିଁ ଥାଉ, ଥାଉ । ତମେ ବରଂ ବିଶ୍ରାମ କର । ମୁଁ ନେଇ ଆସୁଛି ! ଯାଅ, ତମେ ଭିତରକୁ ଯାଅ—ଟିକିଏ ଶୋଇବ ! ମୁଁ ଏଇ ଯାଙ୍ଗେ ଯାଙ୍ଗେ ଆସୁଛି ।

(ଦୁହେଁ ଦୁଇପଟେ ଭିତରକୁ ଗଲେ । ଫେରିବା ବାଟରେ ପରିବା ନେଇ ଆସିଛି ଲକ୍ଷ୍ମୀ । ଅନ୍ୟପଟରୁ ଆସୁଥିଲା ରାମ—ଗାଁର କଲେଜ ପଢୁଆ ପିଲା)

ଲକ୍ଷ୍ମୀ ।। ରାମ ଭାଇ ନମସ୍କାର ! କେବେ ଆସିଛ ?

ରାମ ।। ଏଇ ଦଶଟା ବେଳେ ଆସିଲି ମ'...ମୁଁ ଖରାବେଳେ ଯାଇଥାନ୍ତି ତମ ଘରକୁ । ବାପାଙ୍କ ଦେହ କେମିତି ଅଛି ?

ଲକ୍ଷ୍ମୀ ॥ ହଁ । ଆଜିକାଲି ଦେହ ଟିକିଏ ଭଲ ରହୁଛି ।

ରାମ ॥ ଆଜି ସାର୍ ମୋ' କଥା କ'ଣ କହୁଥିଲେ ?

ଲକ୍ଷ୍ମୀ ॥ ବାପା ତମକୁ ଚିହ୍ନି ପାରୁ ନାହାନ୍ତି । କହୁଲେ ପଚାରୁଥିଲେ—କୋଉ 'ରାମ' ? ବୁଢ଼ା ହେଲଣି—ସ୍ମୃତି ଶକ୍ତି ଦୁର୍ବଳ ହେଇ ଆସିଲଣି ।

ରାମ ॥ ହଉ ଗୋଟେ ରକମ ଭଲ ହେଲା ।

ଲକ୍ଷ୍ମୀ ॥ କ'ଣ ଭଲ ହେଲା ? ତମେ ସିନା ନକେ ଆସଂତ ! ବାପାଙ୍କୁ ପରିଚୟଟା ଦେଲେ କ'ଣ ଚିହ୍ନି ନେବେ ? ତମେ ବାପାଙ୍କୁ ଜାଣିନ । ଭାରି ରାଗି ବାହାରେ । ରାଗ—ପୁରୁଣା ରାଗ ବୋଲି କହିଲେ ତ ବାପା ମୁଣ୍ଡରେ ବସାଇ ବୁଲେଇବେ !

ରାମ ॥ ବାପା ଯଦି ଜାଣିବେନା'...ତୁ' କହି ଦେଇଛୁ ?

ଲକ୍ଷ୍ମୀ ॥ ବୋକାଟେ କି ? ଏ ଗୁଡ଼ା କିଏ କ'ଣ ବାପାଙ୍କୁ କୁହେ ?

ରାମ ॥ କିନ୍ତୁ କହନ୍ତୁ ତ ?

ଲକ୍ଷ୍ମୀ ॥ ନା, ରାମ ଭାଇ ! ତମେ ଆମ ଘରକୁ ଆସିବ କି ନାହିଁ କହିଲ ?

ରାମ ॥ କହିଲି ପରା ଫେରାବେଳେ ଯିବି । ଚିନ୍ତା ନାହିଁ ବର୍ତ୍ତମାନ !

ଲକ୍ଷ୍ମୀ ॥ ମୁଁ କ'ଣ ସେ କଥା କହିଲି ?

ରାମ ॥ ଆଉ ?

ଲକ୍ଷ୍ମୀ ॥ ତମେ ଆମ ଘରକୁ ନିତି ସଂଧ୍ୟାରେ ଆସିବ ।

ରାମ ॥ ସେଇଟା କେମିତି ସମ୍ଭବ ? ସମସ୍ତେ ସନ୍ଦେହ କରିବେ !

ଲକ୍ଷ୍ମୀ ॥ ଏଇନେ କ'ଣ ସନ୍ଦେହ କରୁ ନଥିବେ ? ତାଙ୍କ ସନ୍ଦେହ ତାଙ୍କର—ଆମ ସପକ ଆମଠେଇଁ ! ନା କ'ଣ କହୁଚ ? ସେଇଥିପାଇଁ କହୁଚି ବାପାଙ୍କ ସାଙ୍ଗରେ ପରିଚୟ ହେଇଗଲା'... ଅନ୍ତତଃ ଫେରା ଛୁଟିଟା ପାଇଁ ତ ତମ ସାଙ୍ଗରେ ନିଇତି ଦେଖା ହେଇପାରନ୍ତା...

ରାମ ॥ କାଲି ପୋଖରୀ କୂଳରେ ଦେଖା ହେଲେ କେମିତି ହୁଅନ୍ତା ?

ଲକ୍ଷ୍ମୀ ॥ କେତେବେଳେ ?

ରାମ ॥ ଏଇ...ଦିନ ଗୋଟାଏରୁ ଦି'ଟା ଭିତରେ...

ଲକ୍ଷ୍ମୀ ।। ଇମିତ କ'ଣ ମ ? ମୁଁ କ'ଣ ସେଇଠି ଘଣ୍ଟାଏ କାଳ ଅପେକ୍ଷା କରିଥିବ ? ତମେ ଠିକ୍ ସମୟଟା କହୁନା ?

ରାମ ।। ଆଜ୍ଞା ଠିକ୍ ଅଛି । ମୁଁ ଠିକ୍ ଗୋଟାଏ ବେଳେ ପହଂଚିବ...

(ଉଭୟେ ଉଭୟ ଦିଗକୁ ଗଲେ ଏବଂ ଠିକ୍ ଦିନ ଗୋଟାଏ ବାଜିଲା । ଉଭୟେ ଉଭୟ ଦିଗରୁ ଆସିଲେ । ପ୍ରଥମେ ଦିହେଁ ଦିହିଁଙ୍କୁ ଦେଖିଲା ପରେ ରାମ ଲକ୍ଷ୍ମୀଙ୍କୁ କୁଣ୍ଢେଇ ଧରିଚି । ଏଇ ଅଂଶଟିକୁ ବିଭିନ୍ନ ଓଡ଼ିଶୀ ନୃତ୍ୟର ମୁଦ୍ରାରେ ତିଆରି କରିବାକୁ ହେବ)

ଲକ୍ଷ୍ମୀ ।। ରାମ ଭାଇ ! କିଏ ଦେଖିବ !

ରାମ ।। ଏଇଠି କେହି ନାହିଁ । ହଁ...ହଁ'ତ...ସେ ଦି'ଜଣ ଦେଖୁଛନ୍ତି !

ଲକ୍ଷ୍ମୀ ।। (ଚମକି) କିଏ ?

ରାମ ।। ହେଇ, ସେଇ ଦି'ଟା ପାରା...

ଲକ୍ଷ୍ମୀ ।। ଯାଃ !! (ଠେଲି ଦେଇଚି)

ରାମ ।। ଲକ୍ଷ୍ମୀ, ମୁଁ ଏଥର ବେଙ୍କ୍ ପରୀକ୍ଷାଟା ଦେଉଚି ।

ଲକ୍ଷ୍ମୀ ।। ଅଫିସର ହେଇଯିବ ଏଥର ! କାହିଁକି ପଚାରିବ ଆଉ ଆମକୁ ?

ରାମ ।। ତୁ' ଏ କଥା ଚିନ୍ତା କରିପାରୁଚୁ ଲକ୍ଷ୍ମୀ ?

ଲକ୍ଷ୍ମୀ ।। କାହିଁକି କରିବିନି ଯେ ? ତମ ପୁଅ ଗୁଡ଼ାକ ଉପରେ ଭରସା ଅଛି ?

ରାମ ।। କ'ଣ କହିଲୁ ? ଆମ ଉପରେ ଭରସା ନାହିଁ ?

ଲକ୍ଷ୍ମୀ ।। ଏସ୍...ଗୁଡ଼, ଗୁଡ଼ । ତମ ଉପରେ ଭରସା ଅଛି ।

ରାମ ।। ଚାଲ ସେ ତୋଟା ଭିତରେ ବସିବା । ଚାଲ ।

(ଉଭୟେ ସାମନା ତୋଟା ଭିତରକୁ ଗଲେ । ଫେରିଲାବେଳକୁ ଦେଖା ହେଇଚି ବାବାଙ୍କ ସାଙ୍ଗରେ । ଲକ୍ଷ୍ମୀ ଏକଲା ଫେରୁଥାଏ)

ବାବା ।। କିଏ ତୁମ୍ଭେ ବାଳିକା ! ନିର୍ଜନ ଦ୍ୱିପ୍ରହରରେ ଏକାକିନୀ ଏଇ ପୁଷ୍କରିଣୀ କୂଳରେ ଭ୍ରମଣ କରୁଅଛ !

ଲକ୍ଷ୍ମୀ ॥ ବାବା, ପ୍ରଣାମ ! ମୁଁ ଲକ୍ଷ୍ମୀ... !

ବାବା ॥ ସାଧୁ, ସାଧୁ । ତୁମ୍ଭେ ଦେନେଇ କନ୍ୟା ଲକ୍ଷ୍ମୀ । ଆମ୍ଭର ଦୃଷ୍ଟି ଭ୍ରମ ହୋଇଥିଲା । ଆମ୍ଭର ମନରେ ଏଇ ପ୍ରଥମ ଥର ତୁମ୍ଭଙ୍କୁ ଦେଖି ମାୟା ଜାଗ୍ରତ ହେଲା । ଆମ୍ଭେ ମନେ କଲୁ ତୁମ୍ଭେ କେଉଁ ସ୍ୱର୍ଗର କନ୍ୟା । ମାୟାବିନୀ ତୁମ୍ଭେ, ଯୋଗୀନୀ !

ଲକ୍ଷ୍ମୀ ॥ ବାବା ମୁଁ ତ ସାଧାରଣ ଝିଅଟିଏ !

ବାବା ॥ ତୁମ୍ଭେ ବିନୟୀ ମଧ୍ୟ । ଯୋଗିନୀ ! ତୁମ୍ଭେ ଯୋଗ ଶିକ୍ଷା କରିବ ?

ଲକ୍ଷ୍ମୀ ॥ ମୁଁ କ'ଣ ସେଇ ପବିତ୍ର ସାଧନା ପାଇଁ ଉପଯୁକ୍ତ ବାବା ? ମୁଁ କ'ଣ ଆପଣଙ୍କ ପଦସେବା ପାଇଁ ଉପଯୁକ୍ତ ?

ବାବା ॥ ଆଜି ଏଇ ନିର୍ଜନ ଉପବନ ଭିତରେ ତୁମ୍ଭେ ଯୋଗୀନୀ ପ୍ରାୟେ ଦିଶୁଅଛ । ଆସ ପ୍ରଥମେ ମୁଁ ତୁମ୍ଭଙ୍କୁ ଆଲିଙ୍ଗନ କରେ ।

(ବାବା ଲକ୍ଷ୍ମୀଙ୍କୁ ଡାକୁଛନ୍ତି ଏବଂ ସେ ମନ୍ତ୍ରମୁଗ୍ଧା ଭଳି ପଶିଯାଉଛି ବାବାଙ୍କର ଆଲିଙ୍ଗନ ଭିତରକୁ)

ଲକ୍ଷ୍ମୀ ॥ ବାବା !

ବାବା ॥ ଚାଲ ତୁମ୍ଭଙ୍କୁ ମୁଁ ନେଇଯିବି ଆଶ୍ରମ ଭିତରକୁ । ଏଇ ହେଉଛି ମୋର ଆଶ୍ରମ । ଏହା ପ୍ରକୃତିର କୋଳ ଅଟେ ମା' । ଏଇଠି କୀଟ ପତଙ୍ଗଠାରୁ ଆରମ୍ଭ କରି କୃଷ୍ଣଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଲୀଳା । ଲୀଳାର ସ୍ଥଳୀ ହେଲା ଏଇ ପବିତ୍ର ଆଶ୍ରମ ।

ଲକ୍ଷ୍ମୀ ॥ ବାବା, ମୋର ମନସ୍କାମନା ପୂର୍ଣ୍ଣ ହେବ ?

ବାବା ॥ ମନେକର ତୁମ୍ଭର ମନସ୍କାମନା ପୂର୍ଣ୍ଣ ହୋଇଗଲା । ତଥାପି ଯଦି ଭାବୁଛ ଅପୂର୍ଣ୍ଣ ରହୁଛି ମୁଁ ତାକୁ ପୂର୍ଣ୍ଣ କରିବି ।

ଲକ୍ଷ୍ମୀ ॥ ବାବା ! ମୁଁ କ'ଣ ଭାବୁଛି ଆପଣ ଜାଣିପାରିବେ ?

ବାବା ॥ ଯୋଗ ସାଧନା କଲେ ତୁମ୍ଭେ ମଧ୍ୟ ଜାଣିପାରିବ ।

ଲକ୍ଷ୍ମୀ ॥ ବାବା, ଯୋଗ କ'ଣ ?

ବାବା ॥ ଯୋଗ **is connection**...ଏକ ହୋଇଯିବା ! ଏଇ ଦେଖ, ତୁମ୍ଭେ ମୋ' ସହିତ ଏକ ହୋଇଯାଉଛ........ **you unite,**

**I unite......both unite......**ଆସ । ନିଜକୁ ଆତ୍ମ ଦିବ୍ୟ ପୁରୁଷକାର ସହିତ ସଂଯୁକ୍ତ କରାଅ.. ସଯୋଗ ହେଉ...ଏକ ହେଉ ଆତ୍ମା ଓ ପରମାତ୍ମା...ଏକ ହେଉ ପ୍ରକୃତି ଓ ପୁରୁଷ...

(ଏକ ସଂଯୋଗ ମୁଦ୍ରା ଭିତରେ ଆଲୋକ ସ୍ପଷ୍ଟତର ହୋଇ ଉଠିବ/ରଙ୍ଗୀନ୍ ହୋଇ ଉଠିବ । ସୀତାର ଓ ଜଳ ତରଙ୍ଗ ସାଙ୍ଗରେ ଦ୍ରୁତ ନିତାଲ୍‌ରେ ନୃତ୍ୟ । ତା'ପରେ ସବୁ କିଛି ଅସ୍ପଷ୍ଟ ମନେ ହେବ । ସେଇ ଅସ୍ପଷ୍ଟତା ଭିତରୁ ଶୁଭୁଥିଲା —)

ବାବା ।। ଲକ୍ଷ୍ମୀ...

ଲକ୍ଷ୍ମୀ ।। ବାବା ! ମତେ କାହିଁକି ଅନ୍ଧାର ଦିଶୁଛି । ମୋ' ଦୃଶପଟେ ଖାଲି ଆଲୋକର ଚକ ମିକ...

ବାବା ।। ଲକ୍ଷ୍ମୀ, ଏ ଆଶ୍ରମରେ ଯୋଗଦୀକ୍ଷା ସେତେ ଆନନ୍ଦପ୍ରଦ ନୁହେଁ । ରାଜଧାନୀରେ ଆମର ଯେଉଁ ଆଶ୍ରମ ଅଛି ସେଠାରେ ଯୋଗ ପାଇଁ ଏକ ସ୍ୱତନ୍ତ୍ର କୋଠରୀ ଅଛି ।

ଲକ୍ଷ୍ମୀ ।। ବାବା...ମତେ ଖୁବ୍ ହାଲୁକା ଲାଗୁଛି !

ବାବା ।। ଏହା ଯୋଗର ପ୍ରକ୍ରିୟା ବାଳକେ !

ଲକ୍ଷ୍ମୀ ।। ମୋର କିଛି ମନେ ପଡ଼ୁନି...ମୁଁ କ'ଣ ଉଡ଼ୁଛି ?

ବାବା ।। ଉଡ଼ି ଉଡ଼ି ତୁମ୍ଭେ ମୋର ରାଜଧାନୀ ଆଶ୍ରମକୁ ଯାଇପାରିବ ବାଲିକେ !

ଲକ୍ଷ୍ମୀ ।। ନିଶ୍ଚୟ ଯିବି ବାବା !

ବାବା ।। ରାଜଧାନୀ ଆଶ୍ରମରେ ତୁମ୍ଭେ ଅଧିଷ୍ଠିତା ହେବ ମାୟାବିନୀ ଯୋଗିନୀ ରୂପେ...ହାତବାବାଙ୍କ ଆଶ୍ରମର ଯୋଗିନୀ...ମନସ୍କାମନା ତୁମର ପୂର୍ଣ୍ଣ ହୋଇଯିବ ଯୋଗିନୀ !

ଲକ୍ଷ୍ମୀ ।। ଚାଲନ୍ତୁ ବାବା, ବର୍ତ୍ତମାନ ଆମ୍ଭେ ଚାଲିଯିବା !

[ବର୍ତ୍ତମାନ ଶୁଭିବ ସେଇ ଗୀତ ଦ୍ୱୈତ କଣ୍ଠରେ] .

କାଳିଆ ହାତୀରେ ମୋର କାଳିଆ ହାତୀ
ଦରଶନ କରିବାକୁ ହଜିଛି ମତି
କାଳିଆରେ ଅଗତିର ତୁ' ପରା ଗତି
କହିବାକୁ ତତେ ମୋର ନାହିଁ ଶକତି ॥
କାଳିଆରେ ଦେଲି ତତେ ଦମ୍ୟଣାର ମାଳି
ମୁକୁତା ଟଙ୍କରେ ନେଇ ଯତନେ ଆଣିଲି
ରତ୍ନ ସିଂହାସନେ ଜାଳି ସହସ୍ର ବତି
ସିଂହାର କରୁଛି ଢାଳି ଦେଇ ଭକତି ॥
କାଳିଆ ହାତୀରେ ମୋର କାଳିଆ ହାତୀ...

[ଦ୍ୱୈତ କଣ୍ଠ ବା ସମୂହ କଣ୍ଠରେ ଏଇ ଗୀତଟି ଚାଲିଥିବ । ବାବା ଓ ଲକ୍ଷ୍ମୀ ମାହାରୀ/ଦେବଦାସୀ ନୃତ୍ୟର ଶୈଳୀରେ ନାଚି ନାଚି ମଞ୍ଚ ପରିକ୍ରମା କରି କରି ଚାଲିଯିବେ ରାଜଧାନୀ ।

ସେମାନେ ଯିବା ସଙ୍ଗେ ସଙ୍ଗେ ଚିତ୍କାର/କୋଲାହଳ ସହ ଶୁଭିବ "ହାତୀ ଉପଦ୍ରବ ! ହାତୀ ! ହାତୀ ଉପଦ୍ରବ !"—ଏବଂ ଦୂରରୁ ପାଖକୁ ମାଡ଼ି ଆସିବ ବୃଦ୍ଧର ଚିତ୍କାର : ଲକ୍ଷ୍ମୀଇଇଇ ! ଲକ୍ଷ୍ମୀଇଇଇଇଇ... ଏବଂ ପଶି ଆସିଛନ୍ତି ଦନେଇ ମାଷ୍ଟ୍ରେ ! ବର୍ତ୍ତମାନ ସିଏ ପାଗଳ ]

ବୃଦ୍ଧ ॥ କାହିଁ ? କାହିଁ ମୋର ଲକ୍ଷ୍ମୀ ? କୋଉଠି ହଜିଗଲା ସିଏ ? ହଁ... ହଜିଗଲା । ଲକ୍ଷ୍ମୀ ମୋର ହଜିଯାଇଛି । ଲକ୍ଷ୍ମୀ ! ମା' ମୋର ! ତୋ' ବୋଉ ମରିଗଲା ପରେ କେତେ କଷ୍ଟରେ ବଢ଼େଇଥିଲି ଲେ ତତେ ! ଶେଷକୁ ତୁ ମତେ ଭସେଇ ଦେଇ ଚାଲିଗଲୁ ? (କାନ୍ଦିଲେ) କାହିଁ ! ତୁ' ତ ସେମିତି ଝିଅ ନଥିଲୁ...କେତେ ସେବା କରିଥିଲୁ ମୋର...ଆଜି କେମିତି ମତେ ଏଇ ଦାଣ୍ଡ ମଝିରେ ଗଡ଼େଇ ଦେଇ ଚାଲିଗଲୁ ମା' ? ନା...ତତେ ସେଇ ହାତୀବାବା ନେଇଯାଇଛି...

ମେ ଶଳା ଭଣ୍ଡ ହାତୀବାବା ...ମୋ' ଲକ୍ଷ୍ମୀ ପରା ଝିଅକୁ ମୋ'ଠୁ ଛଡ଼େଇ ନେଲ... ତତେ ଧର୍ମ ସହିବନରେ ହାତୀ...

(ବୃନ୍ଦଶି ଏପରି ବକୁଥିଲ ବେଳେ ହେଇ ବାଟ ଦେଇ ଯାଉଥିଲେ ପୂର୍ବତନ ଭେଟେନେରୀ ଡିରେକ୍ଟର ରାଧାଗୋବିନ୍ଦ ବାବୁ । ଦନେଇ ମାନ୍ତୁଙ୍କୁ ସେ ଚହ୍ନି .ନଥିଲେ )

ତୁ ମରିଯା ! ନ ହେଲେ, ମତେ ହେଲେ ମାରିଦେ'...... ଏ ବୁଢ଼ା ବୟସରେ ମତେ ଆଉ କଷ୍ଟ ଦେ'ନା ! ମୁଁ ଆଉ ସହିପାରିବିନ.. ନା...ତୁ ମରିଯା...ହାତୀ ତୁ' ମରିଯା... (କାନ୍ଦିଲେ)

ରାଧାଗୋବିନ୍ଦ ॥ ଓହୋ...ଆପଣ ବୁଝି ନାହାନ୍ତି...ଭାରତରେ ଗୋଟିଏ ହାତୀର ଆନୁମାନିକ ବୟସ କୋଡ଼ିଏ ଠାରୁ ଆରମ୍ଭ କରି ପଚିଶ ବର୍ଷ ପର୍ଯ୍ୟନ୍ତ ହେଇପାରେ । ଅନ୍ତତଃ ପ୍ରାୟ ଦଶବର୍ଷ ତଳେ ମୁଁ ଯେତେବେଳେ ଭେଟେନେରୀ ଡିରେକ୍ଟର ଥିଲି...ମୁଁ ବହୁ ହାତୀଙ୍କ ସଂପର୍କରେ ଆସିଛି...ଅବଶ୍ୟ ଆଜିକାଲି ରାଜଧାନୀ ମାନଙ୍କରେ ଆଉ ହାତୀ ଦେଖିବାକୁ ମିଳୁନାହାନ୍ତି...ତେବେ କିଏ କିଏ କହୁଛନ୍ତି ଯେ ଆଜିକାଲି ହାତୀ ଆସିଲେଣି... ଆପଣଙ୍କର ଯାହା ପଚାରିବା କଥା ମତେ ପଚାରନ୍ତୁ... ହାତୀଙ୍କର ଭାଷା ମଧ୍ୟ ମୁଁ ବୁଝିପାରେ...ଏଇ ଯୋଉ ବଙ୍କୁଲୀ ବାଡ଼ି, ଦେଖୁଛନ୍ତି...ସେଇଟା ମତେ ଉପହାର ମିଳିଥିଲା... ପ୍ରାୟ ଦଶବର୍ଷ ତଳେ ମୁଁ ଯେତେବେଳେ ଭେଟେନେରୀ ଡିରେକ୍ଟର ପଦରୁ ଅବସର ନେଲି......ସେମାନେ ମତେ ହାତୀରେ ବସେଇ ସହର ବୁଲେଇ ଥିଲେ...ଆପଣ ଜାଣନ୍ତି ? ପାଗଳା ହାତୀକୁ ମୁଁ ହୋମିଓପାଥି ଦେଇ ଭଲ କରି ଦେଇଛି । ମୁଁ ଯେତେବେଳେ ପ୍ରାୟ ଦଶବର୍ଷ ତଳେ ଭେଟେନେରୀ ଡିରେକ୍ଟର ଥିଲି......... ହାତୀମାନେ ଅଣ୍ଡା ଦଉଥିଲେ...ନା, ଆପଣମାନେ ହସୁଛନ୍ତି କାହିଁକି ? କ'ଣ ଭାବୁଛନ୍ତି ମତେ ?

ବୃଦ୍ଧ ॥ ହାତୀ ଆପଣ ଦେଖି ନାହାନ୍ତି । ମୁଁ ଯୋଉ ହାତୀ କଥା କହୁଚି ସେ ହାତୀ ଆହୁରି ଭୟଙ୍କର.. ତାକୁ ପୋଷିବା ଯେତିକି ବିପଦ ଛାଡ଼ିଦେବା ତା'ଠାରୁ ଆହୁରି ବିପଦ...ଜାଣନ୍ତି ?

ରାଧାଗୋବିନ୍ଦ ॥ **No, Not at all !** ହାତୀ ପୋଷିବା ଖୁବ୍ ସହଜ କଥା । ଆପଣଙ୍କୁ କିନ୍ତୁ ଓ୍ୱାଇଲଡଲାଇଫ ସମ୍ପର୍କରେ କିଛି ପଢ଼ାପଢ଼ି କରିବାକୁ ପଡ଼ିବ । ମୁଁ ଯେତେବେଳେ ଭେଟେରିନେରୀ ଡିରେକ୍ଟର ଥିଲି ହାତୀମାନଙ୍କୁ ହୋମିଓପାଥି ଦେଇ ମାରି ଦେଇ ପାରୁଥିଲି । ହାତୀଚାଷ ବି କରିବା ପାଇଁ ସରକାରଙ୍କୁ ଗୋଟିଏ ଯୋଜନା ଦେଇଥିଲି...Yes Elephantry ! ବୁଝି ପାରୁ ନାହାନ୍ତି ? Like Piggery this is Elephantry !!..ଖୁବ୍ ଲାଭଜନକ ବ୍ୟବସାୟ ଆଜ୍ଞା ! ହାତୀଦାନ୍ତକୁ ଆପଣ ରପ୍ତାନି କରିବେ । କେରଳରେ ହାତୀ-ଦାନ୍ତକୁ ନେଇ କୁଟୀର ଶିଳ୍ପ କର୍‌ହେଉଛି ! ଅନେକ କିଛି ହେଇପାରିବ ମଧ୍ୟ ।

ବୃଦ୍ଧ ॥ କିଛି ହେଇପାରିବ ନାହିଁ, ଆପଣ ହାତୀର କିଛି କରିପାରିବେ ନାହିଁ । ମୁଁ ଏ ପର୍ଯ୍ୟନ୍ତ ତା'ର କିଛି କରିପାରିନି ! ହେ-ହେ-ହେ-ହେ...ହାତୀଟାକୁ ଗୋଡ଼େଇ ଗୋଡ଼େଇ ଗୋପାଳପୁରରୁ ରାଜଧାନୀ ପର୍ଯ୍ୟନ୍ତ ଆସିଲି...କାହିଁ ହାତୀଟାକୁ ତ ଦେଖି ପାରିଲିନି ବାବୁ... ମୋର ମନେ ହେଉଛି ଜଗନ୍ନାଥେ କାଳିଆ ହାତୀ ବେଶରେ ସଂହାର କରିବା ପାଇଁ ବୁଲୁଛନ୍ତି...ଭିଏ କଲ୍‌କୀ ଅବତାର...

ରାଧାଗୋବିନ୍ଦ ॥ **No**...ଆପଣଙ୍କୁ ସମସ୍ତେ ଭୁଲ ଖବର ଦେଇଛନ୍ତି ! କଲ୍‌କୀ ଅବତାରରେ ହାତୀ ନଥାଏ । ସେଇଟା ଘୋଡ଼ା । ଘୋଡ଼ା ବିଷୟରେ ବି ମୁଁ ଜାଣିଛି । ବିଭିନ୍ନ ପ୍ରକାର ଘୋଡ଼ା ଅଛନ୍ତି...

ବୃଦ୍ଧ ॥ ହାତୀ !..ହାତୀ କଥା ମୁଁ ପଚାରୁଛି । ହାତୀବାବାଙ୍କୁ ଜାଣିଛ ? ମୁଁ ଜାଣିଛି । ମୋ' ଘଣ୍ଟା ଭଲ କରି ଦେଇଥିଲେ...ଆଉ ଜଣେ ବି ତାଙ୍କୁ ଜାଣିଛି...ମୋ' ଝିଅ ଲକ୍ଷ୍ମୀ । ଆପଣ ଲକ୍ଷ୍ମୀକୁ ଜାଣିଛନ୍ତି ? ମୋ' ! ଝିଅ · (ଫୁସ୍ ଫୁସ୍ ହୋଇ)

ହାଡବାବାଙ୍କର ଆଶ୍ରମରେ ଅଛୁ; ଜାଣିଛନ୍ତି ? ହାଡବାବାଙ୍କ ଆଡ଼ୁ ତା'ର ଗୋଟେ ପୁଅ ହେଇଛୁ । ତା' ନାଁ । ବ କାଳଆ ହାଡ଼ । ତାକୁ ନିଶ୍ଚୟ ଜାଣିଥିବେ ? ରାଜଧାନୀରେ ବୁଲି ବୁଲି ଖବର କାଗଜ ବିକି କରେ !

ରାଧାଗୋବିନ୍ଦ ॥ ଆପଣ କ'ଣ କହୁଛନ୍ତି ? ମାନେ ତମେ କିଏ ? ଶଟାଯ୍ୟାଡ଼୍ ଭେଟେନେରି ସର୍ଜନ ? କୋଉଠି ଥିଲ ? ଆଚ୍ଛା ତମର ଥରେ ମୟୂରଭଞ୍ଜ transfer ହେଇଥିଲା ଆଉ ତମେ ମୋର ଆଠ ନମ୍ବର କ୍ୱାର୍ଟରକୁ ଯୋଡ଼େ ଜର୍ସୀ ଗାଈ ପଠେଇ ଦେଇଥିଲ । ମୁଁ ସେତିକିବେଳେ ତମକୁ ସାହାଯ୍ୟ କରିଛୁ । ଏଇ ଦଶବର୍ଷ ତଳେ ମୁଁ ଶଟାଯ୍ୟାଡ଼ ଖୋଲି । ଏଇଟା ତା' ଆଗର କଥା !

ବୃଦ୍ଧ ॥ ମୋ' ନାତିର ନାଁ ବ କାଳଆ ହାଡ଼ । ଆଉ ଲକ୍ଷ୍ମୀକୁ ଯିଏ ଗୋପାଳପୁରରୁ ନେଇ ଆସିଲା ତା ନାଁ । ହାଡବାବା ।

ରାଧାଗୋବିନ୍ଦ ॥ ମୁଁ ଯାହା ପଚାରୁଛୁ ତା'ର ଉତ୍ତର ଦିଅ—ତମ ମୁଣ୍ଡ ଖରାପ କିଏ ବାବୁ ? ଏଁ ? ତମେ ଭେଟେନେରି ସର୍ଜନ ଥିଲ ? ନା କୋଉ ରାଜାଙ୍କର ମାହୁନ୍ତ ? କୋଉ ହାତୀଟାକୁ ଖୋଜୁଚ ତମେ ? ଅଫିମ ଖାଇ ଦେଇଛ କି ? ରାଜଧାନୀରେ ସବୁ ଛକରେ ପୋଲିସ ! ହାତୀଟେ କୋଉବାଟେ ପଶିବ ? ବାଟ କାହିଁ ? ହାତୀଟା ଯଦି ଆସିବାର ଥା'ନ୍ତା ଭିଜିଲାନ୍ସ ଅଫିସର-ମାନେ ଆଗରୁ ସମସ୍ତଙ୍କୁ ସତର୍କ କରେଇ ଦିଅନ୍ତେଣି ! ଗୋଟେ ଯାହା କୁହନ୍ତିନ...ଆବସର୍ଡ଼ ନାଟକ ଭଳିଆ ହଉଚ ?

ବୃଦ୍ଧ ॥ ନା, ହାଡବାବାଙ୍କୁ କେହି ଜାଣନ୍ତିନ । ମୁଁ ତାଙ୍କୁ ଦଶବର୍ଷ ହେଲା ଖୋଜୁଛୁ । ଲକ୍ଷ୍ମୀ ମଧ୍ୟ ଖୋଜୁଛୁ । ଲକ୍ଷ୍ମୀକି ଜାଣିଛନ୍ତି ? ମୋ' ଝିଅ ! ଷ୍ଟେସନ ବଜାରରେ ବେପାର କରୁଛି । ଶାଳୀ, ଦନେଇ ମାଷ୍ଟର ମାନ ଇଜ୍ଜତ ସାରି ଦେଲା...

ରାଧାଗୋବିନ୍ଦ ॥ ଦନେଇ ମାଷ୍ଟ୍ର କିଏ ?

ବୃଦ୍ଧ ॥ ଗୋପାଳପୁରର ଡନେଇ ମାଷ୍ଟ୍ର 'ଲକ୍ଷ୍ମୀ' ଚାଲିଗଲା ପରେ ମରି-
ଯାଇଛି । ମୁଁ ତା'ର ଭୂତ । ହେ-ହେ-ହେ-ହେ...

ରାଧାଗୋବିନ୍ଦ ॥ ହେଃ ! ଯାଃ-ଯାଃ ଏଇଠୁ......ପାଗଳ ......ଆରେ ମୁଁ ମିଛଟାରେ ଏଇଟା ସାଙ୍ଗରେ ଗପୁଥିଲି ! ଇଏ ନା ସେକେଣ୍ଡେଟେରିଏଟ୍‌ରେ ଥିଲା ନା ଗେଜେଟେଡ୍ ର୍ୟାଙ୍କ୍‌ରେ ! ଯାଃ...ଆଜି ମର୍ଯ୍ୟାଦାର prestige ଗଲା । ଗୋଟାଏ କୋଉ ଡନେଇ ମାଷ୍ଟ୍ର ସାଙ୍ଗରେ Ex. Veterinary Director ରାସ୍ତା ଉପରେ ଏତେ ସମୟ କଥାବାର୍ତ୍ତା କରିପାରିଲେ ? Impossible ! ଯଦି କିଏ explanation ମାଗେ ମୁଁ ସଫା ସଫା ମନା କରିଦେବି । ମୁଁ କୋଉ ତୃତୀୟ ଶ୍ରେଣୀ କର୍ମଚାରୀଙ୍କ ସଙ୍ଗରେ ରାସ୍ତା ଉପରେ କଥାବାର୍ତ୍ତା କରିନ । After all I am a retired class one ! ମୋ' ତଳେ ବହୁତ ହାକିମ ଥିଲେ ..Thousands !! ଗୋଟାଏ ଗାଉଁଲୋକ କଥା ବୋଲି ମୋର କ'ଣ prestige ନାହିଁ ? ହୁଁଃ ! ଭୁଲ ହୋଇଗଲା...

(ରାଧାଗୋବିନ୍ଦ ବାବୁ ଚାଲିଗଲେ । ବୁଢ଼ାଟା ତା' ପଛେ ପଛେ ଗଲା ଏବଂ ଘୃଣାରେ କହିଲା )

ବୃଦ୍ଧ ॥ ଯାବେଃ ! ଯା'ର prestige ଅଛି ତାକୁ prestige ଦେଖେଇବୁ ଯା—ଆଉ ଯା' ଝିଅ ବେଶ୍ୟାପଡ଼ାରେ ଦେହ ବିକୁଛି ତାକୁ ଚୁ ଶଳା କ'ଣ class one ଦେଖଉଚୁ ? ମୋ' ଝିଅ ବି class one ଥିଲା । ମୁଁ ବି କ୍ଲାସ୍ ଓ୍ୱାନ୍ ଲୋକ । କିନ୍ତୁ ତମମାନଙ୍କ ସମାଜରେ class one ଲୋକ ରହି ପାରିବେନି । ତମେ ଧଳାହାତୀ ଗୁଡ଼ାକ ଯୋଉ ପର୍ଯ୍ୟନ୍ତ ଅଛ ଅନ୍ତତଃ ସେ ପର୍ଯ୍ୟନ୍ତ ଏଇଠି କିଛି ବଦଳିବ ନାହିଁ । ତମେ ସବୁ ନର୍ଦ୍ଦମା ଭିତରେ ଥିବା ଲଙ୍ଗୁଡ଼ିଆ ପୋକ । ଖାଲି ବାହାରକୁ ପୋଷାକର ପଦ୍ମ ବୋଲି ଦେଖେଇ ହଉଛ ! ଥୁଃ !! (ତାକୁ ଲକ୍ଷ୍ୟ କରି ଛେପ ପକେଇଲେ । ଠିକ୍ ସେତିକି ବେଳେ ଶୁଭିଲା :)

ହକର୍ ॥ ହାତିଉପଦ୍ରବ ! କଣିଲୁ ସମାଜ, ପ୍ରଜାତନ୍ତ୍ର,ଦଳପତି, ଧରଣୀ । ଝିଟିପିଟି କହିଲା—ଆମର ପଞ୍ଚବାର୍ଷିକ ଯୋଜନା ଗୁଡ଼ିକୁ

ବିଫଳ କରିବା ପାଇଁ ଏମିତି ଗୁଡ଼ାଏ ହାତୀ ରାଜଧାନୀ ମାନଙ୍କରେ ବୁଲୁଛନ୍ତି ! କାଲି ଗାଁ । ମକଲସ୍ ବାଲା କହୁଛନ୍ତି ଯେ ପୋଲିସ୍ର ଅପାରଗତା ଯୋଗୁଁ ଏପରି ଏକ ହାତୀ ଉପଦ୍ରବ ଘଟିଲା । ପଢ଼ନ୍ତୁ ହାତୀ ସପକ୍ଷରେ ଟୁଷ୍ଟଲ୍‌ଙ୍କର ସମ୍ବାଦ ।

ବୃଦ୍ଧ ॥ ହଇରେ ପୁଅ ! ହାତୀଟା କାହିଁ ?

ହକର ॥ ହାତୀଟା ? ଏଇ ଖବର କାଗଜ ଭିତରେ ପୁଡ଼ିଆ ବାନ୍ଧି ତାକୁ ମୁଁ କାଖରେ ଜାକି ବୁଲୁଛି । ହଇଏ ଅଜା ? ତମକୁ କିଏ କହିଲା ରାସ୍ତା ଉପରେ ଏକେଲା ବୁଲିବା ପାଇଁ ? ଯାଅ—ଘରକୁ ଯାଅ—

ବୃଦ୍ଧ ॥ ତୁ ବୁଲୁଚୁ, ମୁଁ ବୁଲିବିନି ?

ହକର ॥ ନାହିଁ ନାହିଁ, ତମେ ବୁଲିପାରିବନି । ହାତୀଟା ପରି ତମକୁ ପାଗଲା କରିଦେଇଛି ।

ବୃଦ୍ଧ ॥ ପାଗଲା ? କିଏ ପାଗଲା ? ସେ ହାତୀଟା ପାଗଲା ହୋଇଯାଇଥିବ ।

ହକର ॥ ଚାଲ ଚାଲ । ଘରକୁ ଚାଲ ।

ବୃଦ୍ଧ ॥ ଘରକୁ ? (ହସିଲେ) ହଁ, ଘର । ଆଜି କି ମତେ ସେଇ ନର୍କକୁ ଯିବାକୁ ହବ ! ତୁ' ଯିବୁନି ?

ହକର ॥ ମୁଁ ପରେ ଯିବି । ତମେ ଯାଅ—ଯିବକି ନାହିଁ ? ମତେ ଚହ୍ନି ଚଟି ? ତମର ସବୁ ପାଗଳାମି ଛଡ଼େଇ ଦେବି ।

ବୃଦ୍ଧ ॥ ହଉ ବାପା ଆଉ ଯୋଷା ହ'ନା । ତୁ' ପରି ମୋ' ମାହୁନ୍ତ !

ହକର ॥ ମାହୁନ୍ତଟି ? ମାନୁଚ ? Good Boy...ବର୍ତ୍ତମାନ ରାସ୍ତା ଉପରେ ଭାଷଣ ନଦେଇ ସିଧା ଘରକୁ ଚାଲ—

(ବୃଦ୍ଧ ଜଣକ ବାଧ୍ୟ ଶିଶୁ ପରି ଚାଲିଲେ)

ବୃଦ୍ଧ ॥ ଆରେ ବାପ୍‌ରେ ! ଏକାବେଳେକେ ଆଦେଶ !

(ଚାଲିଗଲେ । ହକରଟି ଚାରିଆଡ଼କୁ ଚାହିଁଲା)

ହକର ॥ ଆଜି ଅଙ୍କଲ୍ କୁଆଡ଼େ ଗଲେ ?

ମୁଦ୍ରକ ॥ (ପ୍ରବେଶ କରି) ଆରେ partner, ମୋର ଟିକିଏ ଡେରି ହୋଇଗଲା !

ହକର ॥ ହାତୀ ପଛରେ ଗୋଡ଼େଇଥିଲ କି ?

ଯୁବକ ।। ପଛରେ ଆଉ ଗୋଡ଼େଇବ କ୍ଷଣ ? ହାତର ଠିକଣାଟା ତ ଗାଏବ୍ ହେଇଯାଇଚ !

ହକର ।। ତା'ହେଲେ ?

ଯୁବକ ।। ଜଣେ କହୁଥିଲ ଟ୍ରକଟା ଦବ । ତା ଅଫିସ ଆଗରେ ଧାରଣା ଦେଇ ଦେଇ ରାତ ଦଶ ବାଜିଗଲା । ଭିତରେ ସେ କ'ଣ ଗୋଟାଏ ମିଟିଂ ଚାଲିଥିଲ । ମିଟିଂ ଯେମିତ ସରିଲ କାର୍‌ରେ ଭୁସ୍‌କିନା ଚାଲିଗଲା ।

ହକର ।। ଆଜି କ'ଣ ଖାଇବାଟା ଜୁଟିଛି ନା ନାହିଁ ?

ଯୁବକ ।। ମିଳିବା ନ ମିଳିବାରେ ବିଶେଷ କିଛି ଫରକ୍ ନାହିଁ । **Partner,** ଆଜିକାଲି ଶଳା ହୋଟେଲ୍ ବାଲା ବି ଜାଣି ସାରିଲେଣି ମୋ' ଦେଇ କିଛି ହବନି । ସେଥିପାଇଁ ଆଉ ବାକି ଦଉନାହାନ୍ତି । ପ୍ରଥମେ ପ୍ରଥମେ ଯେତେବେଳେ **I.A.S.** ପରୀକ୍ଷା ଦଉଥିଲି, **Bank** ପରୀକ୍ଷା ଦେଉଥିଲି, ଜବରଦସ୍ତ ବାକି ଦେଉଥିଲେ ।

ହକର ।। ଚାଲ୍ । ଆମ ଘରକୁ ଚାଲ, ଖାଇ ଦେଇ ଆସିବ !

ଯୁବକ ।। ଦେଖ ପାର୍ଟନର ! ଫୁଟ୍‌ପାଥ୍‌ରେ, ଦୋକାନ ବାରଣ୍ଡାରେ ଶୋଇ ଶୋଇ ଏଇ ଗଛ, ପଥର, ବେଞ୍ଚ୍‌ମାନଙ୍କ ସାଙ୍ଗରେ ଗୋଟାଏ ପ୍ରକାର ସମ୍ପର୍କ ତିଆରି ହେଇଗଲାଣି ! ତାକୁ ଛାଡ଼ିଦେଇ ମୁଁ ପୁଣି ଗୋଟେ ଘର ଭିତରେ ବନ୍ଦୀ ହେଇ ରହିପାରିବ ବୋଲି ଭାବୁଚୁ **partner** ?

ହକର ।। ଅଙ୍କଲ୍ ! କାହା ଉପରେ ଏଇ ଅଭିମାନ ?

ଯୁବକ ।। ତୁ' କ'ଣ ବୁଝିବୁ ପାର୍ଟନର ? ତୁ ପିଲ ଲୋକ ।

ହକର ।। ତା' ତ ସତ । ତେବେ ବେଞ୍ଚରେ ଶୋଇବା କୋଉ ବଡ଼ ଲୋକର କାମ କି ଏମିତ ? ଚାଲ ଯିବା । ଆଜି ବେପାର ହେଲ ଭଲ ଦିଶୁନି ।

ଯୁବକ ।। ତମେ ଯାଅ, ପିଲଲୋକ । ଆଜିକାଲି ରାଜଧାନୀର ରାସ୍ତା ପରି ଖରାପ !

ହକର ।। ଖରାପ ଆଉ । ମୋର କ'ଣ ଗଲା ? ମୁଁ ମରିଗଲେ କାନ୍ଦିବା ପାଇଁ ମା' ଛଡ଼ା ତ ଆଉ କିଏ ନାହିଁ ! ଡର କାହାକୁ ?

ଯୁବକ ।। ମୁଁ କ'ଣ ଚୋର କେହୁ ନୁହେଁ ?

ହକର ।। ହଁ । ଅଙ୍କଲ୍ । କିନ୍ତୁ ତମେ ମୋ' ପାଇଁ କ'ଣ କରିପାରିବ ? ମୁଁ ତମ ଅବସ୍ଥାରେ ଥିଲେ ଗାଁକୁ ଚାଲିଯାଇଥାନ୍ତି । ତମେ ବି ଚାଲି ଯାଉନା ?

ଯୁବକ ।। ସିଏ ପରା ରାଜଧାନୀରେ ଅଛି !

ହକର ।। କିଏ ?

ଯୁବକ ।। ଯାହାକୁ ମୁଁ ଖୋଜୁଛି !

ହକର ।। କାହାକୁ ଖୋଜୁଛ ?

ଯୁବକ ।। ତୁ ତାକୁ ଚିହ୍ନି ପାରିବୁନି ।

ହକର ।। ଠିକ୍ ଅଛି । ତମେ ଘରକୁ ଆସିବ କି ନାହିଁ କହିଲ ?

ଯୁବକ ।। ଚାଲିବା ପାଇଁ ଆଉ ଦମ୍ ନାହିଁ ବାବା !

ହକର ।। କେତେ ବାଟ କି ? ଏଇ ମାଇଲେ ଯାଇ ତ...ପାଞ୍ଚ ମିନିଟ୍‌ର ବାଟ ।

ଯୁବକ ।। ତୁ ଯା' ପାର୍ଟନର । ମୁଁ ଏଇଠି ଶୋଇପଡ଼ିବି ।

ହକର ।। କ'ଣ ଖାଇବ ?

ଯୁବକ ।। ପାଇପ୍‌ରୁ ପାଣି ପିଇଦେବି ।

ହକର ।। କ'ଣ ଆମ ଘରକୁ କେବେ ଯିବନି ?

ଯୁବକ ।। ଏମିତି ବି ସଂସାର ଉପରେ ବୋଝ ହୋଇଅଛି । ଠିକ୍ ଅଛି । ତୋ' ଉପରେ କାହିଁକି ବୋଝ ହେବି ?

ହକର ।। ହଉ ହେଲା । ତମର ମୋର ଆଜିଠୁ କଟି ! ତମେ ଯେଉଁଦିନ ଯାଏଁ ଆମ ଘରକୁ ନ ଆସିବ ମୁଁ ତମ ସାଙ୍ଗରେ କଟି ।

(କାଳିଆ ଚାଲିଗଲା । ଯୁବକଟି ହସିଲା)

ଯୁବକ ।। କେତେ ଆଉ କାହା ସାଙ୍ଗରେ ମାୟା ରଖିବ ? ଯାହା ସାଙ୍ଗରେ ମାୟା ଥିଲା ସିଏ ତ ହଜିଗଲା ! ଠିକ୍ ଅଛି ରାମଚନ୍ଦ୍ର । ଏଇ ବେଞ୍ଚଟାକୁ ପଞ୍ଚବଟୀ ଆଶ୍ରମ ଭାବି ଶୋଇଯାଅ—

[ଗୋଟାଏ କୋଣରେ ଶୋଇଯାଇ ପାରେ । କିମ୍ବା ମଞ୍ଚ ବାହାରକୁ ଚାଲି ଯାଇପାରେ । କିନ୍ତୁ ଅତି ସନ୍ତର୍ପଣ ସହକାରେ ପ୍ରବେଶ କଲେ ଜଣେ ଗବେଷକ ଓ ଜଣେ ସାମ୍ବାଦିକ । ଆପାତତଃ ସେମାନେ ମାଲି ସାହି ବେଶ୍ୟାପଡ଼ା ଭିତରେ ପଶି ହାତୀ କାହାର କେଉଁ କ୍ଷତି କରିଅଛି ତା'ର ଏକ ବିବରଣୀ ସଂଗ୍ରହ କରୁଛନ୍ତି]

ଗବେଷକ ॥ ଚାଲନ୍ତୁ ।

ସାମ୍ବାଦିକ ॥ ଆପଣ କିନ୍ତୁ ପଚାରିବେ ।

ଗବେଷକ ॥ ଠିକ୍ ଅଛି ଯେ...ମୁଁ କେବେ ଏଇ ଅଞ୍ଚଳକୁ ଆସିନି । ଆପଣ ପଚାରନ୍ତୁ ।

ସାମ୍ବାଦିକ ॥ ତା'ମାନେ ? ଅଧ୍ୟାପକମାନେ ବେଶ୍ୟାପଡ଼ାକୁ ଆସିପାରିବେନି, ଖାଲିସାମ୍ବାଦିକମାନେ ଆସିବେ ?

ଗବେଷକ ॥ ନା, ମାନେ ଯଦି କିଏ ମତେ ଦେଖିବ, ମୋର...

ସାମ୍ବାଦିକ ॥ ହାତୀ ବିଷୟରେ ଗବେଷଣା କଲେ ବେଶ୍ୟାପଡ଼ା କ'ଣ ? ପୁରା ଚନ୍ଦକା ଭିତରକୁ ମଧ୍ଯ ଯିବାକୁ ପଡ଼ିପାରେ ।

ଗବେଷକ ॥ ତା' କରି ହବ । କିନ୍ତୁ ଏଇଠି ସ୍ତ୍ରୀ ଭିତରେ...

[ହଠାତ୍ କୁକୁରଟିଏ ଭୁକିଛି । ସେ ଚମକି ଯାଇଛନ୍ତି]

ସାମ୍ବାଦିକ ॥ ଡାକନ୍ତୁ ଝିଅଟିର ନାଁ ହେଉଛି (ଖାତା ଦେଖି) ଲକ୍ଷ୍ମୀ ।

ଗବେଷକ ॥ ରୋଲ୍ ନମ୍ବର କେତେ ?

ସାମ୍ବାଦିକ ॥ କ'ଣ କହିଲେ ?

ଗବେଷକ ॥ ଓ ! ଆଇ ଆମ୍ ସରି । ଝିଅଟିର ପୁରା ନାଁଟା ନ ଜାଣିଲେ...

ସାମ୍ବାଦିକ ॥ ମାଲି ସାହି ଭିତରେ ପୁରା କ'ଣ ଅଧା କ'ଣ ? ସବୁ ସମାନ । ଆମର ହାତୀ ବିଷୟରେ ଯାହା ପଚାରିବା କଥା ପଚାରି ଏଇଠୁ ଯିବା ।

ଗବେଷକ ॥ ତା'ହେଲେ ମୁଁ ଡାକୁଛି...ଲକ୍ଷ୍ମୀ...ଲକ୍ଷ୍ମୀ...

ସାମ୍ବାଦିକ ॥ ଏଇଟା ତା' ଘର ତ?

ଗବେଷକ ॥ ଯଦି ନ ହେଇଥିବ...

ଲକ୍ଷ୍ମୀ ॥ (ଭିତରୁ) ହାରେ! ଶଳେ ଆସିଗଲେ ନାଗର!

ସାମ୍ବାଦିକ ॥ ଏଇ ଶବ୍ଦ ତ ଭଣ୍ଡାରେ ହୋଉ ସମ୍ବର୍ଦ୍ଧନାଟା ଦିଅଗଲା ସେଇଟା ଆମକୁ ନା ଆଉ କାହାକୁ ଅଧ୍ୟାପକ ବାବୁ ?

ଗବେଷକ ॥ ଭାଇ ଚାଲ୍ ଏଇଠୁ। ମତେ ଭାରି ଡର ମାଡ଼ିଲାଣି।

ସାମ୍ବାଦିକ ॥ ଡର ମାଡ଼ିଲେ କେମିତି ହବ ? ଯେମିତି ହଉ ମତେ ଗୋଟେ **interview** ନବାକୁ ହବ ହିଁ ଅଟାର !

ଗବେଷକ ॥ ପ୍ରଭୁ ରକ୍ଷା କର !

ଲକ୍ଷ୍ମୀ ॥ (ପ୍ରବେଶ କରି) କିଏ ବେ ?

ଗବେଷକ ॥ ନାହିଁ...ମାନେ...

ଲକ୍ଷ୍ମୀ ॥ କୋ ଦାଣ୍ଡରେ ଦି'ଜଣ ? କ'ଣ ବାବୁ ଭଜିଆ ଜଣାପଡ଼ୁଚ...ଏଁ !

ସାମ୍ବାଦିକ ॥ ବାବୁ ମାନେ ? ଆମେ ବାବୁ ତ ! ତମ ନାଁ ଲକ୍ଷ୍ମୀ ?

ଲକ୍ଷ୍ମୀ ॥ ନାଁରୁ ତମକୁ କ'ଣ ମିଳିବ ? ଆଜି ବେପାର୍ ବନ୍ଦ୍ !

ଗବେଷକ ॥ ଆପଣଙ୍କ ନାଁ ମାନେ ତମ ନାଁ ଯଦି ଲକ୍ଷ୍ମୀ ହୋଇଥାଏ..

ଲକ୍ଷ୍ମୀ ॥ କହିଲି ପରା ଆଜି ବେପାର ବନ୍ଦ ! ମୋ' ପୁଅ ଦେହ ଖରାପ...

ସାମ୍ବାଦିକ ॥ ଆମେ ଡାକ୍ତର ନୋହୁ।

ଗବେଷକ ॥ ତମେ ଲକ୍ଷ୍ମୀ ଦେବୀ ?

ଲକ୍ଷ୍ମୀ ॥ (କର୍କଶ ଗଳାରେ) ହଁ, ମୋ' ନାଁ ଲକ୍ଷ୍ମୀ ;

ଗବେଷକ ॥ ନମସ୍କାର। ଆପଣଙ୍କ ପାଖରେ...

ସାମ୍ବାଦିକ ॥ **Go ahead** ! ଆଉ ଡର ନାହିଁ। ଆମେ ଠିକ୍ ଜାଗାରେ ପହଞ୍ଚିଛେ ! ଆପଣଙ୍କର ଆମେ ଗୋଟେ ଫଟୋ ଉଠେଇବୁ।

ଲକ୍ଷ୍ମୀ ॥ ଫଟୋଟାକୁ ମୋର ବ୍ୟୁଛିବ ? ଏଇଠି ଫଟୋ ଉଠାଉଠି ଚଳିବନି । ଆଜି ଯାଅ—

ଗବେଷକ ॥ ଆପଣଙ୍କ ସାଙ୍ଗରେ ଟିକଏ କଥାବାର୍ତ୍ତା ଥିଲା । ଟିକଏ ଭିତରକୁ ଚାଲନ୍ତୁ ।

ଲକ୍ଷ୍ମୀ ॥ ତମେ ବ'ଇଟା ଆଜି ପ୍ରଥମ କରି ଆସିଚ ବୋଧେ ?

ଗବେଷକ ॥ ପ୍ରଥମ ମାନେ...ହଁ ପ୍ରଥମ...ଆଗରୁ କୋଉ ଦୁଃଖରେ ଏଇଠିକି ଆସନ୍ତୁ ?

ସାମ୍ବାଦିକ ॥ ହାତୀ ସମ୍ପର୍କରେ କିଛି ତଥ୍ୟ ସଂଗ୍ରହ କରିବା ପାଇଁ ଆମେ ଆସିଥିଲୁ ।

ଗବେଷକ ॥ ମାନେ ହାତୀ ଆପଣଙ୍କର କି କି ଯତ୍ନ କରନ୍ତି ତା'ର ଗୋଟେ ପୂର୍ଣ୍ଣ ବିବରଣୀ ଯଦି ଦେଇ ପାରନ୍ତେ ତା' ହେଲେ

ସାମ୍ବାଦିକ ॥ ମୁଁ ଆପଣଙ୍କର ଗୋଟିଏ ଫଟୋ ଖବର କାଗଜରେ ଛାପିବାକୁ ଚାହେଁ ।

ଗବେଷକ ॥ Just ଗୋଟାଏ ଫଟୋ ।

ଲକ୍ଷ୍ମୀ ॥ ପଇସା ପଡ଼ିବ !

ସାମ୍ବାଦିକ ॥ କେତେ ଟଙ୍କା ? ଦଶଟଙ୍କା ଦିଆଯିବ ।

ଲକ୍ଷ୍ମୀ ॥ ଖାଲି ଫଟୋ ଉଠିବ ? ଠିକ୍ ଅଛି ତମେ ସବୁ ଅପେକ୍ଷା କର । ଆଚ୍ଛା, ଫଟୋ ଉଠିଲେ କ'ଣ ହବ ?

ସାମ୍ବାଦିକ ॥ କ'ଣ ହବ ? ଖବର କାଗଜରେ ଛପେଇ ଦିଆହବ !

ଲକ୍ଷ୍ମୀ ॥ ସେଇଠୁ ?

ଗବେଷକ ॥ ତମ ବିଷୟରେ ଏକ ପ୍ରବନ୍ଧ ଲେଖା ହବ ।

ଲକ୍ଷ୍ମୀ ॥ ମୋର ସେଥିରେ ଲଭ ?

ଗବେଷକ ॥ ତମ ନାଁ ପ୍ରଚ୍ୟର ହବ !

ଲକ୍ଷ୍ମୀ ॥ ଯାଅ—ଯାଅ ଏଠୁ ! ନାଁ ପ୍ରଚାର କରି ତ ଶଳେ ମତେ ଏଇ ମାନଙ୍କ ପାଖରେ ଆଣି ଫୋପାଡ଼ି ଦେଇଛ...ଅଉ କ'ଣ କରିବାକୁ ଚାହଁ ? ମୋ' ପୁଅଟାକୁ ମାରିଦବ ? ମତେ ପୋଲିସ୍‌ରେ ଦେଇଦବ ? ମୁଁ ତମ ଭଦ୍ର ସମାଜର ସମସ୍ତଙ୍କୁ ଚିହ୍ନିଛି, ଯେତେ ଶଳେ ପଇସାବାଲା ହେଇଥିବୁ ଅପେ ବେଶ୍ୟା । ପଇସା ଅଛି ବୋଲି ତୋଡ଼େଇ ପକଉଛ । ଆଜି ଆମେ ତମ ଆଖିରେ ଶସ୍ତା ହେଇଗଲୁ ନାହିଁ ! ଆହୁରି ପ୍ରଚାର କରିବ ବୋଲି ଆସିଛ ? ଲଜ୍ଜା ନାହିଁ ତମ ମୁହଁରେ ! ଥୁ !!

(ଭିତରକୁ ଚାଲିଗଲା)

ଗବେଷକ ॥ ଲଜ୍ଜା ଜନକ ଘଟଣା । ଉଚିତ ଗଳ୍ପ ପରେ କାମ ହେଲାନି ।

ସାମ୍ବାଦିକ ॥ ମୁଁ ମଦ ସ୍ତ୍ରୀ ସମ୍ପର୍କରେ ଗୋଟେ Article ନ ଛାପେ ତା' ହେଲେ ମୋର ଟି.ଏ. ଟା ମିଳିବନି । କ'ଣ କରିବା, ଅପେକ୍ଷା କଲେ ହୁଅନ୍ତା...

ଗବେଷକ ॥ ଏଇଠି ପୁଣି ଅପେକ୍ଷା ? ପୁଲିସ ରେଡ଼୍ ହେଇପାରେ ! ଚାଲ ଷ୍ଟେସନ ପାଖରେ ବରଂ...

[ଦୂରରୁ ଶୁଭିଲା : ଆଜ୍ଞା କାଳିଆ ଘରଟା କୋଉଠି ? ପ୍ରବେଶ କଲା ଯୁବକଟି]

ଯୁବକ ॥ ଆଜ୍ଞା କାଳିଆ ଘରଟା କୋଉଠି ? କାଳିଆ...ଯୋଉ ପିଲାଟା ସମ୍ବାଦପତ୍ର ବିକେ...

ସାମ୍ବାଦିକ ॥ ଏଇଠି ! ହେଃ ହେଃ...ଆପଣ କାଳିଆ ପାଖକୁ ଆସିଥିଲେ ନା ତା' ମା' ପାଖକୁ ?

ଯୁବକ ॥ ମାନେ...

ସାମ୍ବାଦିକ ॥ କିଛି ଜାଣି ପାରୁନ ? ବେଶ୍ୟାପଡ଼ାରେ ପଶିଛ ହେଲେବେଳେ ଭଦ୍ରମୁଖାଟା ଓହ୍ଲେଇ ଦେବା କଥା ଟିକିଏ ଦେଖିକି ଯିବ । ଆଗରେ ଗୋଟେ ନାଳ ଅଛି...... ସେଇଠି ଗୋଟେ କୁକୁର ଶୋଇଥାଇ ପାରେ...

(ସାମ୍ବାଦିକ ଓ ଗବେଷକ ଚାଲିଗଲେ)

ଯୁବକ ॥ କାଳିଆ ଅଛୁ ? କାଳିଆ...Partner !

ଲକ୍ଷ୍ମୀ ॥ କିଏ ?

ଯୁବକ ॥ କାଳିଆକୁ କହିଦେବେ ଅଙ୍କଲ୍ ଆସିଚ ବୋଲି...

ଲକ୍ଷ୍ମୀ ॥ କିଏ ? କିଏ ତମେ ?

ଯୁବକ ॥ ମୁଁ...ତାକୁ କହିବେ 'ଅଙ୍କଲ୍' ବୋଲି...ସେ ବୁଝିଯିବ ।

ଲକ୍ଷ୍ମୀ ॥ (ଅନ୍ଧାରରେ, ଝାପ୍‌ସା ଆଲୁଅରେ ଚିହ୍ନି ପାରୁ ନଥିଲି) କାଳିଆକୁ ଜର ହୋଇଛି । ଆପଣ ଆସନ୍ତୁ । ବସନ୍ତୁ ।

ଯୁବକ ॥ ମୁଁ ଠିକ୍ ସେଇଆ ଭାବୁଥିଲି । ଦୁଇଦିନ ହେଲା ଦେଖା ହୋଇନି ତ ! ମନଟା ବୁଝୁ ନଥିଲା !

ଲକ୍ଷ୍ମୀ ॥ ମୁଁ ଆଲୁଅଟା ଆଣୁଛି । କାଳିଆ ସବୁଦିନ ଆପଣଙ୍କ କଥା କହେ । (ଲଣ୍ଠନଟା ଆଣି ଥୋଇ ଦେଇଚ) କିଏ ଆପଣ ! ରାମ ଭାଇ !

ଯୁବକ ॥ ଲକ୍ଷ୍ମୀ ! ତୁ' ଏଇଠି ? କାଳିଆ ତୋ' ପୁଅ...

ଲକ୍ଷ୍ମୀ ॥ ରାମ ଭାଇ ! (କାନ୍ଦିଲା) ମୋ' ଭାଗ୍ୟ !

ଯୁବକ ॥ ତତେ କେତେ—କେତେ ଖୋଜିଚି ଲୋ ଲକ୍ଷ୍ମୀ... !

ଲକ୍ଷ୍ମୀ ॥ ରାମ ଭାଇ ! ତମେ ରାସ୍ତାଘାଟରେ ଅନାଥ ହୋଇ ବୁଲୁଚ ? ତମେ କେତେ ବୁଢ଼ା ଯାଇଚ ରାମ ଭାଇ ! ମୁହଁ ସାରା ଦାଢ଼ି ...ଗାଲ ପଶି ଯାଉଚି ..ନଖାଇ ନପିଇ ଫୁଟ୍‌ପାଥ୍ ଉପରେ ତମେ ଶୋଇଚ ଅଥଚ...

ଯୁବକ ॥ ତତେ ଖୋଜୁଚି ..ଦଶ ବର୍ଷ ହେଲା ତତେ ଖୋଜୁଚି...

ଲକ୍ଷ୍ମୀ ॥ ବ୍ୟାଙ୍କ୍ ପରୀକ୍ଷା ଦେଇନ ? ଆଇ.ଏ.ଏସ୍...ପରୀକ୍ଷା ଦେଲନି ?

ଯୁବକ ॥ ମୁଣ୍ଡ ଠିକ୍ ନାହିଁ । ସବୁବେଳେ ଖାଲି ତୋ' ଚିନ୍ତା !

ଲକ୍ଷ୍ମୀ ॥ ମୁଁ ତ ବନ୍ୟାରେ ଭାସିଗଲି । ତମେ କାହିଁକି ଜୀବନଟାକୁ ନଷ୍ଟ କଲ ରାମ ଭାଇ ? ତମେ ଅଫିସର ହୋଇଥାନ୍ତ...ଲକ୍ଷେ ଝିଅ ତମକୁ ମିଳିଥାନ୍ତେ ! ମୋ'ଠି କ'ଣ ଅଛି ? କ'ଣ ପାଇଁ ତମେ ନିଜକୁ ଏମିତ ନଷ୍ଟ କଲ ରାମ ଭାଇ ?

ଯୁବକ ॥ ବାପା ? ସାର୍ କେମିତି ଅଛନ୍ତି ?

ଲକ୍ଷ୍ମୀ ॥ ଦେଖିବ ? ମୁଁ ତାଙ୍କୁ ଡାକି ଦଉଚି ।

(ଲକ୍ଷ୍ମୀ ବୃଦ୍ଧ ପାଗଳକୁ ଆଣିଚି । ମଇଳା କୋଟଟ ଲୁଗା/ଅଖା ଘୋଡ଼େଇ ଦେଇ ସେ ଗୋଟେ ନଡ଼ିଆ କତାକୁ ଖିକି ଖିକି କରୁଥାନ୍ତି)

ଯୁବକ ॥ ଇଏ କିଏ ?

ଲକ୍ଷ୍ମୀ ॥ (କଂଠ ଭର୍ତ୍ତି ପଡ଼ିଚି) ତମ ସାର୍...ତମ ଦନେଇ ସାର୍ ରାମଭାଇ... ମୁଁ ଚାଲିଗଲା ପରେ ସେ ପାଗଳା ହେଇଗଲେ...(କାନ୍ଦିଲା) (ବୃଦ୍ଧ ହସୁଥିଲେ)

ଯୁବକ ॥ ନା—ମୁଁ ବିଶ୍ୱାସ କରି ପାରୁନି... ସବୁ ଜୀବନର ବ୍ୟର୍ଥତା ପଛରେ ... ଗୋଟାଏ ହାତୀ... ଦୁଃଖ ପଛରେ ଗୋଟାଏ .. ଏ ସବୁ ମୁଁ କ'ଣ ଦେଖୁଚି ଲକ୍ଷ୍ମୀ ?

ଲକ୍ଷ୍ମୀ ॥ ରାମଭାଇ ! କେତେଥର ତମକୁ ଘରକୁ ଡାକିଚି—ଆସିନା । ଆଜି ମନକୁ ମନ ଘୋଉଠିକି ଆସିଚ ସେଇଟା ଗୋଟାଏ ବେଶ୍ୟାର ଘର !

ଯୁବକ ॥ ଲକ୍ଷ୍ମୀ ମୁଁ ତ କାନ୍ଦି ପାରୁନି । ତୁ' କାହିଁକି କାନ୍ଦୁଚୁ ? ତୋ' ସାଙ୍ଗରେ ଦେଖା ହେଇଗଲା...ଏଣିକି ବୋଧହୁଏ ମୁଁ କିଛି କରିପାରିବ ...ଚିକିଏ ଆଗରୁ ମତେ ଦୁର୍ବଳ ଲାଗୁଥିଲା ..ବର୍ତ୍ତମାନ କାହିଁକି କେଜାଣି ଆଉ ଭୋକ ହଉନି . ବେଶ ସତେଜ ଲାଗୁଚି ।

ବୃଦ୍ଧ ॥ କିଏ ଆସିଚି ? ଲକ୍ଷ୍ମୀ ! ଏଇଟା କିଏ ?

ଯୁବକ ॥ ମୁଁ ରାମ ସାର୍ !

ବୃଦ୍ଧ ॥ କିଏ ? ରାମ ? ରାମ କିଏ ?

ଲକ୍ଷ୍ମୀ ॥ ତମ ଛାତ୍ର ରାମ । ତମେ ତାଙ୍କୁ ଜାଣିଚ ବାପା ... ମୁଁ ସବୁବେଳେ ତାଙ୍କ କଥା କୁହେ...

ବୃଦ୍ଧ ॥ ସେ କୁଆଡ଼େ ଆସିଚି ?

(ଏତିକିବେଳେ କାଳିଆ ଉଠି ଆସିଲା)

କାଳିଆ ॥ ଅଙ୍କଲ୍ ,ନମସ୍କାର !

ଲକ୍ଷ୍ମୀ ॥ ଆରେ, ତୁ' କାହିଁକି ଉଠି ଆସିଲୁ ?

ଯୁବକ ।। ହଁ ପାର୍ଟନର ! ତୁ' ଜରରେ ନ ପଡ଼ୁକି ମୁଁ ନ ଆସେ ।

କାଳିଆ ।। ନା, ହାତୀ ନ ଆସେ କି ଆମ ଅବସ୍ଥା ଖରାପ ନହୁଏ କି ତମେ ନ ଆସ । ଏଣିକି ତମେ ଏଇଠି ରହିବ ଅଂକଲ୍ ?

ଯୁବକ ।। ହଁ , ଏଇଠି ରହିବ । କିନ୍ତୁ ତୋ ଉପରେ ଆଉ ବୋଝ ହେବନାହିଁ Partner ! ଦେଖ, ମୁଁ ହଠାତ୍ କେମିତ ଦଶବର୍ଷ ତଳକୁ ଫେରି ଯାଉଛି ! ସେ ଦିନ ତୋ' ମା' ହାତ-ବାବା ହାଙ୍ଗରେ ପଳେଇ ଆସିଥିଲି ।

ବୃଦ୍ଧ ।। କାହିଁ ? କାହିଁ ସେ ଶଳା ହାତୀ ? ଲକ୍ଷ୍ମୀ ! ମୋ' ବନ୍ଧୁକଟା ଆଣ ଦେ !

ଯୁବକ ।। ସାର୍ ! ଏ ହାତୀ ବନ୍ଧୁକରେ ମରିବନି ! ଏଇଟା ପରା କିଏ ଦୁର୍ନୀତି, କିଏ ପାପର ଅବତାର... ଏଇଟା ପରା ମଣିଷ ଭିତରର ସେଇ ଆଦିମ ହାତୀଟା ସାର୍ । ଅଙ୍କୁଶ ନାହିଁ... ମାହୁନ୍ତ ନାହିଁ... ହେଇଥି ପାଇଁ ବାହାରେ ବୁଲୁଚି !

ବୃଦ୍ଧ ।। ମୁଁ କିନ୍ତୁ ତାକୁ ମାରିବ !

ଲକ୍ଷ୍ମୀ ।। ମୁଁ ସେଇ ହାତୀଟାକୁ ଖୋଜୁଚି ଗାମ୍ଭ ଭଇ !

କାଳିଆ ।। ମୁଁ ତାକୁ ଖୋଜୁଚି । ମାରିଦେଲେ ପାଞ୍ଚଲକ୍ଷ । ଠିକଣା ଦେଲେ ପାଞ୍ଚ ହଜାର ।

ଯୁବକ ।। ଆମେ ତାକୁ ମାରିବା କିନ୍ତୁ ବନ୍ଧୁକରେ ନୁହେଁ । ତାକୁ ହୋମିଓପାଥି ଦେଇ ତାର କଲେଜର କମେଇ କମେଇ ତାକୁ ନିର୍ବିଷ କରି ଦେଇ ହେବ ।

ବୃଦ୍ଧ ।। (ହସିଲେ) ହାତୀକୁ ହୋମିଓପାଥି ...(ହସିଲେ)

କାଳିଆ ।। ଆରେ ! ହସୁଚ କ'ଣ ଅଜା । ରାଜଧାନୀରେ ସମସ୍ତେ ପରା ହାତୀ ବିଷୟରେ ସଚେତନ ହେଇଗଲେଣି...ସେମାନେ ସମସ୍ତେ ମିଶି ହାତୀକୁ ମାରିବେ; କିନ୍ତୁ ଗୁଳି ବନ୍ଧୁକରେ ନୁହେଁ ଶ୍ରେଷ୍ଠ ଶ୍ରେଷ୍ଠ ହୋମିଓପାଥି ବଟିକା ଦେଇ...ମୁଁ ରାଜଧାନୀରେ ଅନେକ ସ୍ଥାନରେ ଏମିତିଆ କଥା ଶୁଣିଚି ।

ଯୁବକ ।। ହୋମିଓପାଥି ଦେଇ ଦେଲେ ହାତୀ ପାଗଲା ହେଇ ମରିବ ।

କାଳିଆ ।। ଅଙ୍କଲ୍ ! ମୁଁ ଦିନେ ଗୋଟିଏ ହୋମିଓପାଥି ବାକ୍ସ ଧରି ସେ ଶଳା ହାତୀ ପାଖରେ ପହଞ୍ଚିବି । ତା' ଶୁଣ୍ଢ ଭିତରେ ଦି'ଟା ବଟିକା

ଗଳେଇ ଦେଇ ଆସିବ । ନହେଲେ ଗୋଟେ ନଡ଼ିଆ ଭିତରେ ହୋମିଓପାଥିବଟିକା ଥୋଇ ତା' ପାଟି ଭିତରେ ଗଳେଇ ଦେବ ।

ମୂବକ ॥ ଆମକୁ କିଛି ଗୋଟାଏ କରିବାକୁ ହବ । ଏ ହାତୀକୁ ମାରିବାକୁ ହବ ।

ବୃଦ୍ଧ ॥ ଜଣେ ବୃଦ୍ଧ ପାଗଳା, ଜଣେ ବେଶ୍ୟା, ଗୋଟେ ବେକାର ଯୁବକ ଆଉ ଗୋଟେ ଝଙ୍କର କାଗଜ ବିକୁଥିବା ଦେଖି ଛୁଆ......ଏମାନେ ମିଶି ହାତୀକୁ ହୋମିଓପାଥି ଦେବେ...ହାଃ-ହାଃ-ହାଃ...

କଳିଆ ॥ ହଁ ! ହାତୀକୁ ହୋମିଓପାଥି !

(ଗୋଟାଏ ଅର୍ଦ୍ଧ-ବିସ୍ମୃତର Mock Serious noteରେ ଆଲୁଅ ଓ composition (s) fluctuate କରିବେ ! ଶେଷରେ ଅନ୍ଧାର ହେବ । ଆଲୁଅ ଆସିଲା ବେଳକୁ ହାତୀ ଉପରେ ଗବେଷଣା ଚାଲିଚ)

[ଅନ୍ଧାର ହେଲା । ପ୍ରବେଶ କଲେ ଦୁଇଜଣ ଗବେଷକ ଜଣେ ମାହାତ୍ମ୍ୟର ଅଧ୍ୟାପକ ଓ ଆଉ ଜଣେ ସାମ୍ବାଦିକ । ଯେଉଁମାନେ ଦାଣ୍ଡିଆ ଭୂମିକାରେ ଅଭିନୟ କରୁଥିଲେ ସେମାନେ ଏ ଦୁଇଟି ଭୂମିକାରେ ମଧ୍ୟ ଅଭିନୟ କରିବେ]

ଗବେଷକ ॥ ଆଚ୍ଛା, ହାତୀଟା ଖାଲି କ'ଣ ଗୋଟେ ଶୁଣ୍ଢ ?

ସାମ୍ବାଦିକ ॥ ବାଣୀ ବିହାର ଆଡ଼ୁ ମାଡ଼ି ଆସୁଥିଲି ବେଳେ ମୁଁ ପ୍ରାଚୀ ହୋଟେଲ୍‌ରେ ଥାଇ ଦେଖିଲି ହାତୀଟାର ଆଉ କିଛି ନାହିଁ । ଖାଲି ଦୁଇଟା କାନ ଅଛି ।

ଗବେଷକ ॥ ହାତୀଟା କେବଳ ଗୋଟେ ଗୋଡ଼ ମଧ୍ୟ ହେଇପାରେ !

ସାମ୍ବାଦିକ ॥ ନାହିଁ, ଏଇ ଯୋଉ ହାତୀଟା ରାଜଧାନୀରେ ବୁଲୁଚି ସେଇଟା କେବଳ ତାର ଲାଞ୍ଜ । ଅସଲ କଥା ହେଲା ହାତୀ ନାହିଁ !

ଗବେଷକ ॥ ଆପଣ ସାମ୍ବାଦିକ ଲୋକ ତ କଥାଟା ଧରିପାରୁ ନାହାନ୍ତି । ଏଇଟା ଗୋଟାଏ ସାହିତ୍ୟିକ ମାମଲା ! କଥା ହେଲା—ମୁଁ ଯାହା ତାଟା ସଂଗ୍ରହ କରିଛି ତା' ଭିତରୁ ବିଶ୍ଳେଷଣ କରି ଜାଣିଲି ଯେ ହାତୀଟା ଆଉ କିଛି ନୁହଁ—ଗୋଟିଏ ଶୁଣ୍ଢ ! ହଇଏ ଭାଇ ! (ଫୁସ୍ ଫୁସ୍

ଶବ୍ଦ କରି)ହାତୀଟା କ'ଣ ତୃଣଆଡ଼େ ଶୁଣ୍ଢ ବୁଲେଇଲାଣି ? ଗଛରୁ ନଡ଼ିଆ ଛିଡ଼ି ଆସୁଚି । ଏକା ସାଙ୍ଗରେ ଦୁଇ ଦୁଇଟା କରି ନଡ଼ିଆ !

ସାମ୍ବାଦିକ ।। କାଲି ପଶୁ କୃଷି ବିଭାଗ ଅଫିସର କହୁଥିଲେ ସାର୍ ! ଏ ହାତୀଟାକୁ ନ ମାରିଲେ ଆଗାମୀ ପାଞ୍ଚବର୍ଷ ଭିତରେ ଗଛରୁ ସବୁ ନଡ଼ିଆ ସାଫ୍ ହେଇଦିବ ! ନଡ଼ିଆ ବଗିଚା ସବୁ ଏକେବାରେ ପ୍ଲେନ୍ ହେଇଯିବ !

ଗବେଷକ ।। ମୁଁ ବି ହାତୀବିଦ୍ୟା ବିଶାରଦ ଢଙ୍ଗରେ ଗୋଟାଏ ସାକ୍ଷାତ୍କାର କରିଥିଲି । ସେ କହିଲେ ହାତୀଟା ଖାନ୍‌ଦାନୀ ହାତୀ ନୁହେଁ । ମୁଁ ସେଥିରୁ ମାହା ବୁଝିଲି—ହାତୀମାନଙ୍କର ଯେଉଁ ବିଶାଳ ପରମ୍ପରା ଏ ଦେଶରେ ଅଛି, ଏ ହାତୀଟା ତା' ଭିତରେ ଫିଟ୍ କରୁନ ?

ସାମ୍ବାଦିକ ।। କାରଣ ଏଇଟା ଏଇ ଜନ୍ମରେ ପ୍ରଥମେ ମଣିଷ ଥିଲା । ଖାଇ ଖାଇ ହାତୀ ହେଇଯାଇଛି ।

ଗବେଷକ ।। ତମର ଏଇଟା ଗୋଟାଏ ଅବସର୍ଡ଼ ଥିଓରୀ । ମୋର ଥିସିସ୍ ହେଲା – 'ସାହିତ୍ୟରେ ହାତୀ' । ପ୍ରଥମ ପରିଚ୍ଛେଦ ଲେଖାହେବ ହାତୀ କହିଲେ ତୁମେ କ'ଣ ବୁଝ ?

ସାମ୍ବାଦିକ ।। ଏଗୁଡ଼ା ଲେଖିଲେ ଲୋକଙ୍କର କ'ଣ ଉପକାର ହବ ?

ଗବେଷକ ।। ସେଥିରୁ ଆମର କ'ଣ ମିଳିବ ଭାଇ କହିଲ ! ଯେ କୌଣସି ମତେ ଗୋଟାଏ ପି. ଏଚ୍. ଡ଼ି. ହେଇଗଲେ ବ୍ୟକଟ୍ଟା ହେଇଯିବ । ଘରଟା ତିଆରି କରି ତ ଦ'ବର୍ଷ କଟିଗଲା..... ଆଉ ସମୟ କେତେବେଳେ ମିଳିଲା ? ହାତୀଟା କି ଦ୍ରବ୍ୟ ଏ ପର୍ଯ୍ୟନ୍ତ ଜାଣି ହେଲାନି ।

ସାମ୍ବାଦିକ ।। ମୋ' ସାଙ୍ଗରେ ଆହୁରି ମାସେ ଝଣ୍ଟେ, ଆପଣଙ୍କୁ ବୁଲିବାକୁ ପଡ଼ିବ । **Field Study** ନକଲେ ଆପଣ ମୋଟରୁ କିଛି ଲେଖିପାରିବେ ନାହିଁ । ତା' ଛଡ଼ା, ଆପଣ ହାତୀଟା କ'ଣ ଏ ପର୍ଯ୍ୟନ୍ତ ଜାଣି ନାହାନ୍ତି ।

(ଏତିକିବେଳେ ଯୁବକଟି ପ୍ରବେଶ କରନ୍ତି ଓ ଗବେଷକଙ୍କୁ ନମସ୍କାର କରନ୍ତି)

ଯୁବକ ।। ସାର୍ ନମସ୍କାର ! ଏଇନେ କୋଉ କଲେଜରେ ସାର୍ ?

ଗବେଷକ ।। ଛୁଟିରେ ଅଛି । ଗବେଷଣା କରୁଚି । ନ ହେଲେ ପରି ଇନକ୍ରିମେଣ୍ଟ୍ ବନ୍ଦ !

ଯୁବକ ।। କୋଉ ବିଷୟରେ ସାର୍ ?

ଗବେଷକ ।। 'ସାହିତ୍ୟରେ ହାତୀ' । ଏକଦମ୍ ନୂଆ ଟପିକ୍ !

ଯୁବକ ।। ମୁଁ ବି ହାତୀଟାକୁ ଖୋଜୁଚି ସାର୍ !

ଗବେଷକ ।। ସତେ ? ତା'ହେଲେ ଭଲ ହେଲା ।

ଯୁବକ ।। ଆପଣ ହାତୀଟାକୁ ଅପେକ୍ଷା କରିଛନ୍ତି ସାର୍ ?

ଗବେଷକ ।। ଆଉ ଉପାୟ କ'ଣ ? ଶୁଣିଚି ତା' ସାଙ୍ଗରେ ଗୋଟେ ହାତୀ-ଭାଷା ବିଶାରଦ ଅଛି । ଭେଣ୍ଟି ହୁବିଧା । ଗୋଟାଏ ହେଲରେ ଏକେବାରେ ପି.ଏଚ୍.ଡ଼ି. ଶେଷ !

ଯୁବକ ।। ହାତୀଟା ତା' ହେଲେ କେତେବେଳେ ଆସିବ ?

ଗବେଷକ ।। କେତେବେଳେ ଆସିବ ? ଇଏ ହେଲେ ମୋର ସାଙ୍ଗ । ସାମ୍ବାଦିକ । ସିଏ ମଧ୍ୟ ହାତୀ ଉପରେ ଗୋଟାଏ feature ଲେଖିବେ ବୋଲି ବ୍ୟସ୍ତ ହୋଇ ବୁଲୁଚନ୍ତି ।

ଯୁବକ ।। ନମସ୍କାର ସାର୍ । ମୁଁ ସାହିତ୍ୟରେ ଏମ୍.ଏ. ପାଶ୍ କରିଛି । ମୋ' ପାଇଁ ଗୋଟାଏ ଚାକିରି ଯୋଗାଡ଼ କରିଦିଅନ୍ତୁ ।

ସାମ୍ବାଦିକ ।। ଠିକ୍ ଅଛି । ଏ ହାତୀ କାମଟା ସରୁ ।

ଯୁବକ ।। ହାତୀଟା କୋଉଠି ଅଛି ?

ସାମ୍ବାଦିକ ।। ହାତୀଟା ନାହିଁ ବୋଲି ତ ଆମେ ଏଇଠି ଅଛୁ ! ସାହିତ୍ୟର ଛାତ୍ର ହୋଇଚ, ଏଇତିକି ବୁଝି ପାରୁନ ?

ଯୁବକ ।। ତା' ମାନେ...

ଗବେଷକ ।। ତା' ମାନେ ହାତୀର ଅନୁପସ୍ଥିତି ସହିତ ଆମର ଉପସ୍ଥିତି କେତେ ଦୂର ମାନେ ଇଏ...

ଯୁବକ ।। ସାର୍ ! ଆପଣଙ୍କ ହାତୀ ମୁଣ୍ଡରେ ଗୋଟାଏ ସୁନା କଳସ ଧରି ବୁଲୁଥିଲା ବୋଲି ମୁଁ ଶୁଣିଛି ! କଥାଟା କ'ଣ ସତ ?

ସାମ୍ବାଦିକ ।। କ'ଣ କହିଲେ ? ସୁନା କଳସ ? ହୋଇପାରେ .. ତା'ହେଲେ ଚାଲନ୍ତୁ ଗୋଟାଏ କାମ କରିବା । ଥାନାରେ ଦ' ଚୋରଟା ହାତୀଙ୍କର ଫଟୋ ଅଛି । ତାକୁ ଦେଖି ସାରିଲେ ମୁଆଡ଼େ ଯିବା କଥା ଟିବା—

(ସେମାନେ ଗଳପରେ ପ୍ରବେଶ କଲେ ହାତୀଭାଷା ବିଶାରଦ ଓ ହାତୀ)

ହସ୍ତୀଭାଷା ବିଶାରଦ ।। (ପ୍ରଥମେ ମାଇକ୍ରୋଫୋନ୍ ଧରି ପରୀକ୍ଷା କରୁଛନ୍ତି) ହାଲୋ...ହାଲୋ...ଟେଷ୍ଟିଙ୍ଗ୍...one....two... three...four... ନମସ୍କାର । ସୁଦୂର ଆସାମ୍, ହିନ୍ଦୁ ସଭ୍ୟତାର ଆଦିସ୍ଥଳ ସିନ୍ଧୁନଦୀର ଦେଶ ଅତିକ୍ରମ କରି ଶ୍ରୀଲଙ୍କା ବାଟେ ହାତୀ ରାଜଧାନୀର ପବିତ୍ର ଭୂମିରେ ପଦାର୍ପଣ କରିଛନ୍ତି । ହାତୀଙ୍କୁ ନେଇ ଆପଣଙ୍କ ଦେଶରେ ଯେ ଏକ ଜଟିଳ ପରିସ୍ଥିତି ସୃଷ୍ଟି ହେଉଛି ସେଭଳି ଏକ ଜଟିଳ ପରିସ୍ଥିତିକୁ ଲକ୍ଷ୍ୟକରି ଥରେ, ଏକଦା ଜଣେ କେହି ମହାପୁରୁଷ କହିଛନ୍ତି... (କହିବା କଥାଟି ମନେ ପଡୁନଥିଲା)...ସେ ଯା' ହେଉ (ହାତୀର ଗର୍ଜନ) ହାତୀବାବୁ ତାଙ୍କ ଭାଷାରେ ଯାହା କହୁଛନ୍ତି ତାକୁ ଓଡ଼ିଆରେ ଅନୁବାଦ କଲେ ଜଣାଯାଏ ଯେ ହାତୀ ହେଉଛନ୍ତି ପଶୁମାନଙ୍କ ମଧ୍ୟରେ ରାଜା । ସେ ରାଜଧାନୀ ପରିକ୍ରମା କରୁ କରୁ ବହୁସଂଖ୍ୟାରେ କୁଟୀର ମାନ ଓ ପାଦରେ ଚଲାବୁଲା କରୁଥିବା ଲୋକ ନିଷ୍ପେଷିତ ହୋଇଛନ୍ତି ବୋଲି ତାଙ୍କ ପାଖରେ ଖବର ପହଞ୍ଚିଛି । ହାତୀବାବୁ କହୁଛନ୍ତି ଯେ ସେ ଏଥିପାଇଁ ମୋଟେ ଦାୟୀ ହୋଇପାରିବେ ନାହିଁ । ସେ ଚାଲୁଥିଲା

ବେଳେ କେତେବେଳେ ହୁଏତ ଟ୍ରାଫିକ ନିୟମ ଜାଣିନଥିବା ଲୋକମାନେ ତାଙ୍କ ସାହୁଣ୍ଡ ତଳକୁ ଯାଇ ଚେପି ହୋଇ ଯାଉଛନ୍ତି । ସେମାନଙ୍କ ମୃତ୍ୟୁରେ ସେ ମର୍ମାହତ ଏବଂ ଶୋକ ସନ୍ତପ୍ତ ପରିବାର ବର୍ଗଙ୍କ ପାଇଁ ଆଜି ସେ ଏକ ଶୋକବାର୍ତ୍ତା ପଠାଇବେ ବୋଲି ସ୍ଥିର କଲେ । ଆପଣମାନଙ୍କୁ ସେ ପୁଣିଥରେ ସ୍ମରଣ କରାଇ ଦେଉଛନ୍ତି ଯେ ସେ ସାମ୍ୟବାଦରେ ବିଶ୍ୱାସ କରନ୍ତି । ସମାଜବାଦରେ ମଧ୍ୟ । ଆଗାମୀ ନିର୍ବାଚନରେ ତେଣୁ ଆପଣମାନେ ହାତୀ ଚିହ୍ନରେ ମୋହର ମାରି ଦେଶରେ ସ୍ୱର୍ଣ୍ଣଯୁଗ ଗଢ଼ି ତୋଳନ୍ତୁ । ନମସ୍କାର । ଅମେ ପୁଣି ଆସିବୁ । ନମସ୍କାର ।

(ହାତୀ ଓ ତା'ର ଭଷା ବିଶାରଦ ଚାଲିଗଲେ ଏବଂ ପ୍ରବେଶ କଲା ବୃଢ଼ଟି )

ବୃଢ଼ ॥ ଛିଃ ! ତତେ ମାରିଲେ ମୋ' ହାତ ଗନ୍ଧେଇବ ! ଲାଜ ମାଡ଼ିଲାନି ତତେ ? ମୋର କେହି ନାହିଁ ବୋଲି ତୁ ମତେ ସର୍ବସ୍ୱାନ୍ତ କରି ଦେଲୁ ? ମୋ' ନାତିକୁ କୋଳରେ ବସେଇ ମୁଁ ସଂସ୍କୃତ ବ୍ୟାକରଣ ପଢ଼େଇଥାନ୍ତି । ତୁ' ତାକୁ ରାସ୍ତାରେ ଖବର କାଗଜ ବିକେଇଲୁ ? ମୋ' ଲୁହରେ ତୁ' ଭସି ଯିବୁରେ ହାତୀ ! ନିଶ୍ଚୟ ଭସିଯିବୁ !

ହକର ॥ ଅରେ ! କି ଆଶ୍ଚର୍ଯ୍ୟ ଲୋକ କିହୋ ଅଜା ? ତମେ ପୁଣି ଦାଣ୍ଡକୁ ଚାଲି ଆଇଲ ? ଏଇଟା ତମ ଗୋପାଳପୁର ନୁହଁ, ବୁଝିଲ ? ରାଜଧାନୀ...!! ଏଇଠି ହଜାରେ ଗାଡ଼ି ମଟର ! ଯାଏ ଯଦି ମଡ଼େଇଦେଇ ଯିବ ପାଟି ଫିଟେଇ ପାରିବନି ! ଜାଣିଚ ?

ବୃଢ଼ ॥ ଏଁ ! ଗାଡ଼ି ମତେ ମଡ଼େଇଦେବ କାହିଁକି ? ମୁଁ ତ ମୋ' ବାଟରେ ଅଛି !

ହକର ॥ ଗାଡ଼ି ମଡ଼େଇଦେଲେ ବି ତମେ କିଛି କହିପାରିବ ନାହିଁ । ଜାଣିଛ ? ଏଇଟା ରାଜଧାନୀ ।

ବୃଢ଼ ॥ ହେଉଥାଉ ରାଜଧାନୀ । ମୁଁ ମୋ' ଝିଅକୁ ଦେଖିବାକୁ ଆସିଛି । ମୋ' ଝିଅକୁ ଜାଣିଚୁ ? କଲେଜରେ ପଢ଼ୁଛି ଏଇଠି ? ଶଳା

ଗୋପାଳପୁରର କେତେଜଣ ତାଙ୍କ ଝିଅକୁ ଏମ୍.ଏ. ପଢ଼େଇଲେ ?
ପଢ଼େଇଲି ମୁଁ !

ହକର ॥ ହଉ, ଚାଲ, ଚାଲ । ତମେ ଶୀଘ୍ର ଘରକୁ ଗଲେ ମୁଁ ମୋ' କାମରେ ଯିବି । (ହାତଧରି) ଆସ...ଆସ...ଘରକୁ ଆସ । ମା'...ଦେଖ ଅଜା କେମିତି ଦାଣ୍ଡରେ ବୁଲୁଥିଲେ...

ଲକ୍ଷ୍ମୀ ॥ (ଆସି) ବାପା ? ତମେ ଖୁବ୍ ହଇରାଣ କରୁଛ ।

ବୃଦ୍ଧ ॥ ମୁଁ ତତେ ହଇରାଣ କରୁଛି ?

ଲକ୍ଷ୍ମୀ ॥ ବଡ଼ ଅଟକଟ ହଉଚ ! ମୁଁ ପରା ଏକୁଟିଆ ଲୋକ, ତମକୁ କେମିତି ଚଳେଇବି କହିଲ ?

ବୃଦ୍ଧ ॥ ମୁଁ ତତେ ହଇରାଣ କରୁଛି ନା ?

ଲକ୍ଷ୍ମୀ ॥ ଚାଲ । ମୁଁ ବାଢ଼ି ଦେଇଛି, ଖାଇବ ଚାଲ !

ବୃଦ୍ଧ ॥ ହାରାମିଟା ଆଉ ମରିବ ନାହିଁ ?

ହକର ॥ ସମସ୍ତେ ମିଶି ତାକୁ ମାରିବା । ଯୋଉଠି ଦେଖିବା ତାକୁ ମାରିବା, ଅଲବତ୍ ମାରିବା ! ତମେ ଚାଲ ।

ବୃଦ୍ଧ ॥ ରାମ ଯାଇଛି ?

ଲକ୍ଷ୍ମୀ ॥ ହଁ, ରାମ ଭାଇ ରାଜ୍ୟ ସାରା ବୁଲି ହାରାମିକୁ ଖୋଜୁଛନ୍ତି । ହାରାମି ମିଳିଲା ମାତ୍ରେ ତମକୁ ଖବର ଦେବେ ।

ବୃଦ୍ଧ ॥ କହୁଛୁ ? ଖବର ଦେବ ବୋଲି କହୁଛୁ ?

ଲକ୍ଷ୍ମୀ ॥ ହଁ, ତମେ ଘରକୁ ଚାଲିଲ ଆଗେ !

(ଲକ୍ଷ୍ମୀ ଓ କାଳିଆ ବୁଢ଼ାକୁ ନେଇ ଯାଉଛନ୍ତି ଘରକୁ । ଅନ୍ୟପଟୁ ହାସ୍ୟଭାଷା ବିଶାରଦ ଓରଫ୍ ରାଧାଗୋବିନ୍ଦକୁ ଟାଣି ଟାଣି ଆଣିଛନ୍ତି ଦୁଇଜଣ ବାଣ୍ଡୁଆ ଓ ଯୁବକ । ଜଣେ ଆଗରୁ ଦୌଡ଼ି ଆସି ଫଟୋ ଉଠେଇଲା )

ରାଧାଗୋବିନ୍ଦ ॥ ଆରେ...ଆରେ...ଆରେ...ଆପଣମାନେ ମତେ ଏମିତି ଟାଣୁଛନ୍ତି କାହିଁକି ?

କଲମ ବାଣ୍ଡୁଆ ॥ ଚାଲନ୍ତୁ ଥାନାକୁ ।

ରାଧାଗୋବିନ୍ଦ ॥ ଥାନାକୁ କାହିଁକି ଯିବି ? ମୁଁ କ'ଣ ଚୋର ?

କଲମ ବାଣ୍ଡୁଆ ॥ କସ୍ମାଶ୍ଚିତେ ମୁକ୍ତଂ ଦଦ୍ୟାତ୍ ।

ରାଧାଗୋବିନ୍ଦ ॥ ତା' ଅର୍ଥ କ'ଣ ?

କଲମ ବାଣ୍ଡୁଆ ॥ ହାତୀଟା ଯେତେବେଳେ ଅଦୃଶ୍ୟ ହୋଇଯାଉଛି, ତା' ବଦଳରେ ମୁଁ ଆପଣଙ୍କୁ ନେଇ ଥାନାରେ ହାଜର କରେଇବି ।

ରାଧାଗୋବିନ୍ଦ ॥ କିନ୍ତୁ ମୁଁ ହାତୀ ନୁହେଁ । ମୁଁ Exveterinary Director...ଦଶବର୍ଷ ତଳେ ମୁଁ କାର୍ଯ୍ୟରୁ ଅବସର ଗ୍ରହଣ କରିଛି । ଯୋଉଦିନ ମୁଁ ଅବସର ଗ୍ରହଣ କଲି ସେଦିନ ମଟେ ଆମ ଲୋକେ ହାତୀ ଉପରେ ବସେଇ ବୁଲେଇ ଥିଲେ । ତା' ଆଗରୁ ମୁଁ ଯେତେବେଳେ ମାଟ୍ରିକ୍ ପାଶ୍ କଲି ରାଜା ମତେ ହାତୀ ଉପରେ ଚଢ଼େଇ ଅଠର କୋଶ ଜମିଦାରୀ ବୁଲେଇଥିଲେ । ତା'ପରେ ମୁଁ ଯେତେବେଳେ ଭେଟେରେନାରୀ ପାଠ ପଢ଼ି ଲଣ୍ଡନରୁ ଆସିଲି ରାଜାଙ୍କ ହାତୀ ଝୁଆଡ଼ିଟା ମୋ' ଚାର୍ଜରେ ଥିଲା । ମୁଁ ହାତୀମାନଙ୍କ କଥାବାର୍ତ୍ତା ବୁଝିପାରେ... ମାନେ ଜୀବନ ସାରା ପଶୁ ପକ୍ଷୀଙ୍କ ମେଳରେ ରହି ମୋର ପଶୁଜାତି ପ୍ରତି ଏକ ମମତା ମାନେ .. ସ୍ୟାପୋ ଆସି ଯାଇଛି । କିନ୍ତୁ ଆପଣମାନଙ୍କ ଧାରଣା ଭୁଲ୍ । ମତେ ଆପଣ ହାତୀ ମନେ କରି ଥାନାକୁ ନେଉଛନ୍ତି । ଏହା ଘୋର ଅନ୍ୟାୟ !

କଲମ ବାଣ୍ଡୁଆ ॥ ଦେଶରେ ହାତୀ ଉପଦ୍ରବ ଚାଲିଥିଲା ବେଳେ ଅନ୍ୟାୟ ବୋଲି ଆଉ କିଛି ନାହିଁ । ଚାଲନ୍ତୁ ଆପଣ ।

କଲମ ବାଣ୍ଡୁଆ ॥ ମୁଁ ତ ଭାବିଥିଲି ହାତୀଟା ମରିଗଲାଣି ବୋଲି । କିନ୍ତୁ ଆପଣଙ୍କୁ ଦେଖିଲା ପରେ ମନେ ହେଉଛି ଆପଣ ହିଁ ହାତୀ ।

ରାଧାଗୋବିନ୍ଦ ॥ ମୁଁ କିଛିଦିନ ହାତୀଭଡ଼ା ବିଶାରଦ ରୂପେ କାର୍ଯ୍ୟ ଚଳାଉଥିଲି । କିନ୍ତୁ ମୁଁ ହାତୀ ନୁହେଁ !

ଯୁବକ ॥ ତା'ମାନେ ଆପଣ ମଣିଷ ଆଉ ପଶୁ ଭିତରେ ଏକମାତ୍ର ସଂଯୋଗ । ଚାଲନ୍ତୁ, ଆପଣ ଥାନାକୁ ଚାଲନ୍ତୁ ।

ରାଧାଗୋବିନ୍ଦ ।। କିନ୍ତୁ ମୁଁ ହାତୀ ନୁହେଁ ।

କଲମ ବାଣ୍ଡିଆ ।। ହାତୀ ଓ ମଣିଷର ଏକ ସମନ୍ୱୟ ।

ରାଧାଗୋବିନ୍ଦ ।। ଠିକ୍ କଥା । ସମନ୍ୱୟ ପଦଟା ମତେ ଭଲ ଲାଗିଲା ।

ଯୁବକ ।। ଆପଣ ସମନ୍ୱୟ ହୁଅନ୍ତୁ କି ଗାଧ ହୁଅନ୍ତୁ, ମୁଁ ହାତୀଙ୍କୁ ନେଇ ଆଜି ଥାନାକୁ ଯିବି । ଆଜି ପାଞ୍ଚ ହଜାର ଟଙ୍କା ନ ଆଣିଲେ ଏ ରାଜଧାନୀରେ ଚଳିବା ମୁସ୍କିଲ !

ରାଧାଗୋବିନ୍ଦ ।। କ'ଣ ଜବରଦସ୍ତ ?

ଯୁବକ ।। ନ ହେଲେ ହାତୀର ଠିକଣା ଯୋଗେଇ ଦିଅନ୍ତୁ । ଫନ୍ଦା ପକେଇ ଆମେ ତାକୁ ଧରିବୁ । ଯେମିତି ହେଲେ ଧରିବୁ ।

କଲମ ବାଣ୍ଡିଆ ।। ମୁଁ ତାକୁ ଏଇ ଖଣ୍ଡାରେ କାଟି ପକେଇବି ।

କଲମ ବାଣ୍ଡିଆ ।। ହାତୀ ବିଷୟରେ ଏମିତି ଗୋଟେ ସାଟାୟାର୍ ଲେଖିବି ଯେ ହାତୀ ଛତୁ ହେଇଯିବ ।

ଯୁବକ ।। ଆପଣ ରୁହନ୍ତୁ ସାର୍ ! ସାଟାୟାର୍ କ'ଣ ଲେଖିବେ ? ସାଟାୟାର୍ ଲେଖିଲେ କ'ଣ ହାତୀ ମରିବ ? ସରକାର କହୁଛନ୍ତି ହାତୀଟାକୁ ମୃତ ଅବସ୍ଥାରେ ନେଲେ ପାଞ୍ଚଲକ୍ଷ ଟଙ୍କା ମିଳିବ !

କଲମ ବାଣ୍ଡିଆ ।। ଠିକ୍ ଅଛି ଭଗବାଣ୍ଟି ନେଇଯିବା ।

କଲମ ବାଣ୍ଡିଆ ।। ତେଣୁ ଆପଣ ହାତୀ ହେଇଯାଆନ୍ତୁ ।

ରାଧାଗୋବିନ୍ଦ ।। କି ଆଶ୍ଚର୍ଯ୍ୟ ! ମତେ କାହିଁକି ନେବେ । ବରଂ ଆପଣଙ୍କ ଗବେଷଣା ପାଇଁ ମୁଁ କିଛି ତଥ୍ୟ ଯୋଗାଇ ଦେଇପାରେ । ହାତୀ ହେଉଛି ଦେଶର ବିଚ୍ଛିନ୍ନତାବାଦ ଭିତରେ ଏକ ମାତ୍ର ସମନ୍ୱୟ । ଯେପରି କି ଗଙ୍ଗା ଓ ଯମୁନାର; ଯେପରିକି ସୋଭିଏତ ତେଲ ଏବଂ ଅଗବ୍ରର...ମୋବିଲ୍ ଏବଂ ଘିଅର... ଅର୍ଫିହର ଓ କବିତାର......ଜଣେ ମହାପୁରୁଷଙ୍କ ଭାଷାରେ କହିବାକୁ ଗଲେ...ଛାଡ଼ନ୍ତୁ ସେ ଯା' ହେଉ । ହାତୀ, କବିତା

ମଧ୍ୟ ଦେଖିପାରେ । ଏ ହାତୀର ରଙ୍ଗ ସାବ୍ କା । ଏ ସାବ୍ କା ହାତୀ ଗତ ବର୍ଷ ଶାରଳାପୀଠରୁ ଗୋଟିଏ ନଡ଼ିଆ ଆଣିବା ପାଇଁ ଯାଇ ନ ପାଆନ୍ତେ ପାଗଳା ହୋଇଯାଇ ରାଜଧାନୀରେ ବୁଲୁଛି ।

କଲମ ବାଣ୍ଟିଆ ॥ ଏହା ଏକ ଉପାଦେୟ ତଥ୍ୟ । ମୁଁ ଏଇ ସାବ୍ କା ହାତୀ ବିଷୟରେ ମୋ ଥିସିସ୍‌ରେ ଗୋଟାଏ ଅଧ୍ୟାୟ ନିଶ୍ଚୟ ଲେଖିବି ।

କଲମ ବାଣ୍ଟିଆ ॥ ସେଇଠୁ ଆମର କ'ଣ ଲାଭ ? ଆମର ଯଦି ଲାଭ ନ ହେବ ଦେଶର କି ଲାଭ ହେବ ? ଅସଲ କଥା ହେଲା ଆମେ ଆପଣଙ୍କୁ ପାଞ୍ଚ ପର୍ସେଣ୍ଟ କମିଶନ ଦେବୁ । ଆପଣ ହାତୀକୁ ମାରିବା ଉପାୟଟି ଆମକୁ କହିଦିଅନ୍ତୁ ।

କଲମ ବାଣ୍ଟିଆ ॥ ହାତୀଟା ତ ଦୁର୍ଦ୍ଧର ହାତୀ; ମରିବ କେମିତି ?

ଗୋପାଳଗୋବିନ୍ଦ ॥ ଆପଣମାନେ ମୂର୍ଖ ଲୋକ । ଅସ୍ତୁ ମନ ଦେଇ ଶୁଣନ୍ତୁ ॥ ହାତୀର କଳେବର ଯେତେ ବଡ଼ ହେଉ ନା କାହିଁକି, ସାମାନ୍ୟ ହୋମିଓପାଥି ଦେଇ ମଧ୍ୟ ମାରି ଦିଆଯାଇପାରେ । ଶୁଣନ୍ତୁ । ହସନ୍ତୁ ନାହିଁ । ସ୍ୱାର ଦୃଷ୍ଟାନ୍ତ ଅଛି । ବହୁ ହାତୀ ହୋମିଓପାଥିରେ ମରନ୍ତି ।

କଲମ ବାଣ୍ଟିଆ ॥ ହାତୀ ଅଫିମ ଖାଏ ବୋଲି ଶୁଣିଛୁ । ପାଗଳା ହାତୀ ମଧ୍ୟ ବଶବର୍ତ୍ତୀ ହୁଏ । କିନ୍ତୁ ହୋମିଓପାଥି ବିଷୟରେ ମୁଁ ତ ଶୁଣି ନାହିଁ !

କଲମ ବାଣ୍ଟିଆ ॥ ଆପଣ ଜାଣନ୍ତିକି ନାହିଁ ? ହାତୀ ଏକ ରୋଗରେ ପରିଣତ ହେଲଣି । ରାଜଧାନୀରେ ସମସ୍ତଙ୍କର ଗୋଟାଏ ଲେଖା ଶୁଣୁ ଲମ୍ବୁଛି । ଗଛରେ ନଡ଼ିଆ ରହୁନାହିଁ । ଗୋଡ଼ ଫୁଲିଯାଉଛି । ହାତୀରୋଗ ହୋଇଥିବା ଲୋକେ ପ୍ରଚୁର ଖାଇ ପାରନ୍ତି । ତା'ଛଡ଼ା ରାଜନୈତିକ ମହଲରେ କେବଳ ହାତୀମାନଙ୍କ ଦ୍ୱାରା ସବୁ କାମ ହୋଇପାରୁଛି ।

ଯୁବକ ॥ ବର୍ତ୍ତମାନ ଏଇ ହାତୀଟାର କ'ଣ ହବ ସେ କଥା ନିର୍ଦ୍ଧାରିତ ହୋଇଛି କି ?

ରାଧାଗୋବିନ୍ଦ ॥ ହାତୀ ଭୀଷଣ ଦୁର୍ବଳ ଅବସ୍ଥାରେ ତାକୁ ଜଣେ କେହି ଅନୁଚ୍ଛେଦ କରି ହୋମିଓପାଥି ଖୁଆଇ ଦେଲେ ସେ ମରିଯିବ ।

ଯୁବକ ॥ କିଏ ଖୁଆଇବେ ?

କଲମ ବାଣ୍ଡିଆ ॥ ମୁଁ ଦୂରରୁ ହାତୀକୁ ମାରିଦେଇ ପାରେ । କିନ୍ତୁ ହାତୀ ପାଖକୁ ଯାଇ ତାକୁ ଔଷଧ ଦେବା ବିଦ୍ୟାଟାତ ମୁଁ ଶିଖିନ ! ଆପଣ ନିଜେ ଦିଅନ୍ତୁ କିଶୋରଦ ବାବୁ ..

ରାଧାଗୋବିନ୍ଦ ॥ ମୁଁ ସେଭଳି ଅନ୍ୟାୟ କାର୍ଯ୍ୟ କରିବ ନାହିଁ । ପାଞ୍ଚ ପର୍ସେଣ୍ଟ୍ କମିଶନ ନେବ ଔଷଧଟି ଦେଇଦେବ ।

ଯୁବକ ॥ ତା' ହେଲେ କିଏ ଦେବ ହୋମିଓପାଥି ? ଆପଣ ?

କଲମ ବାଣ୍ଡିଆ ॥ ମୁଁ ଅଗାଁ ଲାଇବ୍ରେରୀ ଭିତରର ଲୋକ । ହାତୀର ସାମ୍ନା ସାମ୍ନି ହେବା ଅଭ୍ୟାସ ମୋର ନାହିଁ ।

ଯୁବକ ॥ ତା' ହେଲେ ? ଆପଣମାନଙ୍କୁ ପାଞ୍ଚ ଲକ୍ଷ ଟଙ୍କାରୁ କୌଣସି ଭାଗ ଦିଆଯିବ ନାହିଁ ।

କଲମ ବାଣ୍ଡିଆ ॥ ତା'ହେଲେ କାହାକୁ ଦିଆଯିବ ?

[ଏତିକବେଳେ ହକର ପିଲାଟି ଆସି ପହଞ୍ଚିଛି । ସମସ୍ତେ ଚିନ୍ତିତ ଅବସ୍ଥାରେ ବସିଛନ୍ତି । ପିଲାଟି ପ୍ରତ୍ୟେକଙ୍କ ପାଖକୁ ଯାଇ ସେମାନଙ୍କ ମୁହଁକୁ ଦେଖିଛି]

ହକର ॥ ଅଙ୍କଲ୍ ! କଣ ହେଇଚ ? ସମସ୍ତେ କାହିଁକି ଏମିତ ଚୁପ୍‌ଚାପ୍ ବସିଛନ୍ତି ?

ଯୁବକ ॥ ହାତୀକୁ ମାରିବା ପାଇଁ ହୋମିଓପାଥି ଔଷଧ ମିଳୁଚ । କିନ୍ତୁ ବିଶାଳ ହାତୀ ସାମନାକୁ ଯିବ କିଏ ? କେହି ରାଜି ହେଉ-ନାହାନ୍ତି ।

ରାଧାଗୋବିନ୍ଦ ॥ ଅବଶ୍ୟ ଟିକିଏ ବିପଦ ଅଛି । ହାତୀ ଯଦି ଦରକାରୀ ଡୋଜ୍ ଅପେକ୍ଷା ବେଶୀ ଖାଇଦିଏ ତା' ହେଲେ ପାଗଳା ହେଇଯିବ

ଏବଂ ସାମନାରେ ଯିଏ ଥିବ ତାଙ୍କୁ ମାଡ଼ି ଚକାଟି ଚାଲିଯିବ । ଅନେକ ବାଟ ଗଲାପରେ ଯାଇ ମରିବ ! ଠିକ୍ ଅଛି । ଆସନ୍ତା କାଲି ସନ୍ଧ୍ୟାରେ ହାଡ଼ବାବୁ ପ୍ୟାରେଡ଼ ପଡ଼ିଆରେ ଭାଷଣ ଦେବେ । ସେତେବେଳେ ଯାହା କରିବା କଥା କରିବ । ମୁଁ ଚାଲିଲି । (ଚାଲିଗଲେ)

ହକର ।। ଅଙ୍କଲ୍ ! ମୁଁ ହାଡ଼ଙ୍କୁ ହୋମିଓପାଥି ଦେବି ।

ଯୁବକ ।। ନା, ତୁ' ପିଲାଟେ ତୋ' ଦେଇ କ'ଣ ହେଇପାରିବ ? ବାଣ୍ଟୁଆ ବାବୁ ଯାଆନ୍ତୁ ।

ବାଲିମ ବାଣ୍ଟୁଆ ।। ଏକଲବ୍ୟ ପିଲାଟେ ହେଲେ ମଧ୍ୟ ଲକ୍ଷ୍ୟ ଠିକ୍ ବାନ୍ଧୁଥିଲା । ଏଇ ପିଲାଟି ଶ୍ରେଷ୍ଠ ହେଲେ କ'ଣ ହେଲା ବଡ଼ ଟାଣ ବିଷ ଅଛି । ତାଙ୍କୁ ହିଁ ପଠାନ୍ତୁ ।

ହକର ।। ଠିକ୍ ଅଛି । ମୁଁ ଯିବି । ହାଡ଼ବାବୁଙ୍କୁ ଅନୁରୋଧ କରେଇ ଔଷଧଟା ଖୁଆଇ ଦେବି ।

ଯୁବକ ।। ଯଦି କିଛି ହେଇଯାଏ ?

ହକର ।। ହାଡ଼ ଯଦି ମରନ୍ତି ଦଳ ମରିଯିବ । ତମକୁ ତ ପାଞ୍ଚ ଲକ୍ଷ ଟଙ୍କା ମିଳିବ ଅଙ୍କଲ । ଏ ରାଜଧାନୀର ପାଦଚଲା ଲୋକେ ଟିକିଏ ଶାନ୍ତିରେ ବଞ୍ଚି ପାରିବେ ତ !! ଚାଲନ୍ତୁ ଅଙ୍କଲ, ଆମେ ପ୍ୟାରେଡ଼ ପଡ଼ିଆକୁ ଯିବା । ଚାଲନ୍ତୁ ।

(ସେମାନେ ଚାଲିଗଲେ ଓ ହାଡ଼ଭାଷା ବିଶାରଦ ହାଡ଼ଙ୍କୁ ନେଇ ଆସିଲେ)

ହା. ଭା. ବି. ।। ହାଡ଼ବାବୁ ଯାହା କହୁଛନ୍ତି ତା'ର ଓଡ଼ିଆ ଅନୁବାଦ ହେଲା ଏଣିକି ସେ ଦେଶସେବାରେ ସମସ୍ତ ମନୋଯୋଗ କରିବେ ଓ ସମୟ ମିଳିଲେ କବିତା ଲେଖିବେ । ଏଣୁ ତାଙ୍କୁ କେହି ଡରିବା ଆବଶ୍ୟକ ନାହିଁ । ଏଣିକି ଦରକାର ପଡ଼ିଲେ ସେ ସମାଜବାଦ ମଧ୍ୟ ତିଆରି କରିବେ । ହାଡ଼ବାବୁଙ୍କୁ ଯିଏ ଯାହା ପ୍ରଶ୍ନ ପଚାରିବା କଥା ପଚାରନ୍ତୁ ।

[ଏତକବେଳେ ହକର ଗିଲ୍‌ଟି ଡାକ୍ତର ବେଶ ହୋଇ ଆସିଲା]

ହକର ॥ ନମସ୍କାର ।

ହା.ଖା.ବ ॥ କ'ଣ ଦରକାର ?

ହକର ॥ ଆଜ୍ଞା ମୁଁ ଜଣେ ଡାକ୍ତର । ହୋମିଓପାଥି ଶିଶି ଭଳି କ୍ଷୁଦ୍ର ଲୋକ । ମୁଁ ଗୋଟିଏ ଔଷଧ ଆବିଷ୍କାର କରିଛି । ଏହା ଖାଇବା ପାଇଁ ମିଠା । ଏଣୁ ଏହାକୁ ଆପଣ ଖାଇଲେ ଦେଶର ଯେତକ ଉପକାର ହେବ, ଆପଣଙ୍କର ସେତିକି ଉପକାର ହେବ ।

ହାତୀ ॥ (ଗର୍ଜନ କଲା)

ହା.ଖା.ବ ॥ ହାତୀବାବୁ କହୁଛନ୍ତି ଯେ ଏହି କ୍ଷୁଦ୍ର ଶିଶିର କ୍ଷୁଦ୍ର ବଟିକାମାନଙ୍କୁ ଦେଖି ତାଙ୍କର ହସିବା ପାଇଁ ଇଚ୍ଛା ହେଉଅଛି । ସେ ଶିଶି ସହିତ ଡାକ୍ତରଙ୍କୁ ମଧ୍ୟ ଖାଇ ଦେଇ ପାରନ୍ତି...

(ବାହାରୁ ଶୁଭିଲା ଯୁବକର ଡାକ "ପାର୍ଟନର୍ ...ପାର୍ଟନର...ଚାଲି ଆସ"... ଲକ୍ଷ୍ମୀର ସ୍ୱର........ "କାଳିଆ"...... "କାଳିଆ"...)

ହକର ॥ ଦସ୍ତାକର ମତେ ଖାଆନ୍ତୁ ନାହିଁ । 'ମୋ' ଔଷଧଟା ଖାଆନ୍ତୁ । ଆପଣ ଭିତରଟା ପରିଷ୍କାର ହୋଇଯିବ । ଆପଣଙ୍କ ଭିତରଟା ପରିଷ୍କାର ହେଲେ ଦେଶଟା ମଧ୍ୟ ପରିଷ୍କାର ହୋଇଯିବ !

ହା.ଖା.ବ ॥ ହାତୀବାବୁ କହୁଛନ୍ତି, ତାଙ୍କର ଔଷଧ ଖାଇବା ପାଇଁ ଆପତ୍ତି ନାହିଁ । ଯୀଶୁଖ୍ରୀଷ୍ଟ କଣ୍ଟା ବାଡ଼େଇ ହେବାପାଇଁ ରାଜି ହୋଇଥିଲେ । ସକ୍ରେଟିସ୍ ବିଷ ପିଇବା ପାଇଁ ରାଜି ହୋଇ ଯାଇଥିଲେ ଆଉ ଇଏ ତ ହାତୀ ପାଇଁ ସାମାନ୍ୟ ହୋମିଓପାଥି ! ହାତୀ କହୁଛନ୍ତି ଏହାକୁ ସେବନ କରିବାଦ୍ୱାରା ଯଦି ସମାଜର ବୃହତ୍ତର ମଙ୍ଗଳ ସାଧିତ ହେବ ତା'ହେଲେ ସେ ଏଇ ଔଷଧକୁ ସେବନ କରିବେ ।

[ହକର ପିଲଟି ହୋମିଓପାଥ୍ ଟିଣିଟିଏ ବଢ଼େଇଦେଲା । ହଠାତ୍ ସେତକକବେଳେ ଦୌଡ଼ ଦୌଡ଼ ଆସିଲା ଯୁବକଟି ]

ଯୁବକ ।। ପାର୍ଟନର ! ତମେ ଯାଅ !

ହକର ।। ମୁଁ ତାଙ୍କୁ ହୋମିଓପାଥ୍ ଦେଇ ସାରଲଣି । ଖାଲି ଦେଖିବ 'କ'ଣ ହଉଚ ।

ଯୁବକ ।। ହାତୀ ବର୍ତ୍ତମାନ ପାଗଲା ହବ । ତୁ' ଘରକୁ ଚ୍ଛଲଯା' ।

ହକର ।। ପାଗଲା ହଉ । ମୁଁ କାହିଁକି ଯିବ ?

ଯୁବକ ।। ବର୍ତ୍ତମାନ ପ୍ରଳୟ ମାଡ଼ିଆସିବ । ତୁ' ଗ୍ରେଟ ପିଲଟେ...... ଚ୍ଛଲଯାଆ ।

ହକର ।। ତମେ ପାଞ୍ଚଲକ୍ଷ ଟଙ୍କା ପାଇବ ଅଙ୍କଲ୍ ! ତମେ ଏଇଠି ରୁହନାହିଁ ।

ଯୁବକ ।। ତୁ' ବଞ୍ଚିଥାରେ ମଣି । ମୁଁ ହାତୀ ପାଖକୁ ଯାଉଛୁ । ମୁଁ ମଲେ କାହାର କଛୁ 'କ୍ଷତ ହେବନାହିଁ' । ତୁ' ପରା ମୋର ଭବଷ୍ୟତ !

[ଏତକ କହ ଯୁବକଟି ପିଲଟିକୁ ପଠେଇ ଦେଇ ନିଜେ ଠିଆହେଇଛୁ ଏବଂ କଛୁ: ସମସ୍ତ ପରେ ଭୀଷଣ ବସ୍ଫୋରଣର ଶବ୍ଦ ସହତ ଝଡ଼ ହେବ । ମଞ୍ଚ ଅନ୍ଧାର ହେବ । ପୁଣି ଆଲୁଅ ଆସିଲା ବେଳକୁ ଯୁବକଟି ସେଇଠି ହାତୀ ପାଦତଳେ ମକଚ ହେଇ ମରଶୋଇଛୁ । ଆଉ କେହ ନାହାନ୍ତି ।

ଆବାହ ସଙ୍ଗୀତ ଗମ୍ଭୀର । ଭିତରୁ ଆଞ୍ଚଳିକ ସମ୍ବାଦ ]

ଘୋଷଣା ।। ହାତୀକୁ ମାଡ଼ଦେଇଥିବା ଯୁବକଟି କୌଣସି ଅନିର୍ଦ୍ଦିଷ୍ଟ କାରଣରୁ ମରିଯାଇଛୁ । 'ସରକାରଙ୍କ ପକ୍ଷରୁ ଘୋଷଣା କରାଯାଇଥିବା ପାଞ୍ଚ ଲକ୍ଷ ଟଙ୍କା ନେବା ପାଇଁ ତାଙ୍କର କେହି ଉତ୍ତରାଧିକାରୀ ନାହାନ୍ତି । ତେଣୁ ସେହି ଟଙ୍କାରେ ହାତୀମରା ଛକ ଉପରେ ତାଙ୍କର ଏକ ପ୍ରତିମୂର୍ତ୍ତି ଉନ୍ମୋଚିତ ହେବ ବୋଲି ଜଣେ ମୁଖପାତ୍ର ମନ୍ତବ୍ୟ ଦେଇଛନ୍ତି ।



Printed at : MAN MOHAN TRADRES,Berhampur-2